# ଆତ୍ମ ପରିଚୟ

## ଓ

# ଅନ୍ୟାନ୍ୟ ଗଳ୍ପ

୧୯୫୮

ପ୍ରଥମ ସଂସ୍କରଣ



ଲେଖକ—

ବ୍ରହ୍ମାନନ୍ଦ ପଣ୍ଡା

ମୂଲ୍ୟ: ଏକ ଟଙ୍କା

ମୋର ଆବାଲ୍ୟ ବନ୍ଧୁ

**ଶ୍ରୀ ଶଶିଭୂଷଣ ପଢ଼ଙ୍କ**

ସ୍ମୃତିରେ

# ଆତ୍ମ-ପରିଚୟ

( ୧ )

ସୁଦର୍ଶନ ମହାପାତ୍ରଙ୍କ ସଙ୍ଗେ ମୋର ସାକ୍ଷାତ ହେଲା ବଡ଼ ଆକସ୍ମିକ ଭାବରେ ଏବଂ କହିବାକୁ ଗଲେ ମୋର ଏକ ଶ୍ରୁଧିତ ମୂହୁର୍ତ୍ତରେ ।

କେତେଦିନ ଧରି ମୋର ମନରେ ଗୋଟାଏ ମର୍ମନ୍ତୁଦ ଦ୍ୱନ୍ଦ୍ୱ ଜାଗୁଥିଲା; ମୁଁ ଓଡ଼ିଆ କି ନୁହେଁ ! ନିଜକୁ ଓଡ଼ିଆ ବୋଲି ଗର୍ବ କଲା ବେଳେ ମନରେ ସନ୍ଦେହ ଜାତ ହେଉଥିଲା ଯେ ଯେଉଁମାନେ କୋଣାର୍କ ଗଢ଼ିଥିଲେ, ତାଳ ପତ୍ରରେ ବର୍ଣ୍ଣନା କରୁଥିଲେ, ଆଉ ଗୀତ-ଗୋବିନ୍ଦ ରଚନା କରିଥିଲେ, ହୁଏତ ଓଡ଼ିଆ ନୁହନ୍ତି । ଯଦି ସେମାନେ ଓଡ଼ିଆ ତେବେ ହୁଏତ ମୁଁ ଓଡ଼ିଆ ନୁହେଁ । ମାତ୍ର କେତୋଟା ଶତାବ୍ଦୀର ପରଂପରା ଭିତରେ

ମଣିଷ ଏତେ ସ୍ୱାର୍ଥାନ୍ଧ ହେବା କୌଣସି ଜାତିର ଇତିହାସରେ ନାହିଁ ।

ମୁଁ ଏପରି ଏକ ମାନସିକ ସ୍ଥିତିରେ ଉପନୀତ ହୋଇ ସାରିଥିଲି, ଯେଉଁ ସ୍ଥିତି ସେତିକିବେଳେ ଉପୁଜେ ଯେବେ କୌଣସି ଲୋକ ତାର କୁଳୀନତା ସମ୍ପର୍କରେ ନିଜର ଗର୍ଭଧାରିଣୀକୁ ସନ୍ଦେହ ଚକ୍ଷୁରେ ଦେଖି ଉନ୍ମାଦ ବିକଳ ହେଇଥାଏ । ଏପରି ଏକ ମରଣ-ସଙ୍କଟରେ ପଡ଼ି ମୁଁ ସୃଜନଶୀଳ ହୋଇପାରୁ ନଥିଲି । ମୋର ଲେଖନୀ ଦ୍ୱିଧାଗ୍ରସ୍ତ ହୋଇ ପଡ଼ିଥିଲା । ମନର କଳା-କଳ୍ପନା କାନ୍ଦି ହରାଇ ଥିଲା । ଜୀବନ ଦୁର୍ବହ ହୋଇ ଆସୁଥିଲା । ଅନୁଭବ କରୁଥିଲି, କି ଏକ ଅଭିବ୍ୟକ୍ତି ପାଇଁ ମୋର ପ୍ରତ୍ୟେକ ଲୋମକୂପ ଯେପରି ଉନ୍ମୁଖ ହୋଇ ଉଠିଛି; କଣ୍ଠନାଳୀ ଚିତ୍କାରରେ ମୁଁ ଯେପରି ଦୁନିଆକୁ ଘୋଷଣା କରିବାକୁ ଚାହୁଁଛି ମୋର ଆତ୍ମ-ପରିଚୟ; ମୋର ହୃଦୟ ବିଦୀର୍ଣ୍ଣ କରି ମୁଁ ଯେପରି ପ୍ରମାଣ କରିବାକୁ ଚାହୁଁଛି ମୋର ଜାତୀୟ ପରମ୍ପରାର ସ୍ୱତନ୍ତ୍ରିକ ବୈଶିଷ୍ଟ୍ୟ କିନ୍ତୁ ହାୟ ! ସେଇଠାଇ ତ ଥିଲା ପ୍ରଶ୍ନବାଚକ୍ଷ ଆଜି ମୋର ପ୍ରାଣର ବେଦନା । ସୁଷମା ଲେଖିଥିଲ :

"..........ତମର ଚିଠିଟି ପଢ଼ି ମୁଁ କିଛି ବୁଝି ପାରୁନ[illegible] କୁଆଡ଼େ ଯିବ ? ଆତ୍ମ-ପରିଚୟ ସନ୍ଧାନରେ ! ଇସ୍ସ୍ ପୁଣି କି ରକ[illegible] ପାଗଳାମୀ ? ତମ କଲମ ତମର ଯଥେଷ୍ଟ ପରିଚୟ ନୁହେଁ ! ନିଜକୁ ଖୋଜିବା ଅପେକ୍ଷା ତାହା ଭିତରେ ନିଜକୁ ହଜାଇ ଦେବାର ଆୟୋଜନ କର । ପଣ୍ଡିତ ପବନ ନବୀଜିଲେ ତମ ଜାତିର ଲୋକେ ସବୁବେଳେ ଏଭଳି ରୁଗ୍ଣ ହୋଇଥାନ୍ତି...............” ।

ମୋର ହଜିବା ସ୍ୱପ୍ନଇ ସବୁବେଳେ ଦେଖେ ଏଇ ସୁଷମା । ମୁଁ ହଜି ଯିବାରେ ସେ ମୋର ଖୋଜିବାର ସାର୍ଥକତା ଉପଲବ୍ଧି କରେ । ଜୀବନକୁ ବ୍ୟର୍ଥତା ମୁହଁରୁ ରକ୍ଷା କରିବାକୁ ହେଲେ, ବଞ୍ଚନା ଭିତରୁ ଉଦ୍ଧାର କରିବାକୁ ହେଲେ, ସେ କହେ, ଏକମାତ୍ର ପ୍ରଣୟ ପ୍ରତିମା ହିଁ ଅବ୍ୟର୍ଥ ଅବଲମ୍ବନ; ଅପରିହାର୍ଯ୍ୟ; ସାର୍ବଭୌମ ସାଫଲ୍ୟ ।

ସୁଷମା ପ୍ରତି ମୁଁ ସ୍ନେହଶୀଳ ହେବାର ମୁଖ୍ୟ କାରଣ ହେଉଚି, ନାରୀ ଜୀବନର ଏ ବିଭବ ପ୍ରତି ମୋର ସମ୍ମାନ । ପୁରୁଷକୁ ହଜେଇ ନେବାହିଁ ନାରୀର ପରମ ବିଭୂତି । ଯେଉଁ ନାରୀ ଏ ବିଭୂତି ହରାଏ, ସେ ହରାଏ ତାର ନାରୀତ୍ୱ; ତାର ଶ୍ରୀ । ସେ ନିଜେ ବିକଳାଙ୍ଗ ହୁଏ ଓ ସମାଜକୁ ବିକଳାଙ୍ଗ କରେ ।

ସୁଷମା ସେପରି ଏକ ତରୁଣୀ ଯିଏ ବଞ୍ଚନା ବରଣ କରି ଅନ୍ୟର ବଞ୍ଚିବା ବଞ୍ଚିବାଯୋଗ୍ୟ କରିଦିଏ । ଆମ ଭିତରେ ଦେହର ବ୍ୟବଧାନ ଅଲଙ୍ଘ୍ୟ ହେଲେ ମଧ୍ୟ, ମନର ଗୋପନରେ ଜଣେ ଜଣକୁ ବାନ୍ଧି ରଖିବାର ଅବକାଶ ନଥିଲେ ମଧ୍ୟ ପ୍ରାଣର ସଜଳତାରେ ଆମେ ଥିଲୁ ଅଭିନ୍ନ; ମାନବତାରେ ଆତ୍ମୀୟ । ସୁଷମା ମୋର ହଜିବା କାମନା କଲାବେଳେ ଖୋଜିବା ସାଧନାରେ ମୁଁ ଗୃହତ୍ୟାଗୀ ହେଲି । ନିଜପ୍ରତି ନିବିଡ଼ ଅନୁରାଗ ମତେ ବୈରାଗୀ କରିଥିଲା ।

( ୨ )

ମୁଁ ବୁଲୁଥିଲି ବ୍ୟାପକ ଭାବରେ । ଗ୍ରାମରୁ ସହର, ପର୍ବତ ଚୂଳରୁ ଝରଣା କୂଳ, ସୁନାର ଷେତରୁ ଲୁହାର କାରଖାନା,

ଶ୍ୟାମଳ ବନ ବୀଥିକାରୁ ପ୍ରଶସ୍ତ ପିଚୁରାସ୍ତା, ଛାମୁଣ୍ଡା ତଳର କାନ୍ଥ ମଣ୍ଡଳରୁ ସୂର୍ଯ୍ୟଶୁଷ୍କିତ ସିନେମାଘର, କଦମ୍ୟ ଶ୍ରମିକ ବସ୍ତିରୁ ଲୁହା-ସିମେଣ୍ଟର ଆଧୁନିକ 'କୁଟିର' ପର୍ଯ୍ୟନ୍ତ—ନାନା ପଥରେ, ନାନା ପରିସର ଭିତରେ ।

ଦୈନ୍ୟପୀଡ଼ିତ ଗ୍ରାମବାସୀ ମୁହଁରୁ ଶୁଣିଲି ଲାଞ୍ଛନାର କାହାଣୀ; ମଧ୍ୟବିତ୍ତ ଗୃହସ୍ଥ ଉତ୍ଥାପନ କଲେ ଲୁଣ ତେଲ ସଙ୍ଗେ ଲଜ୍ଜା-ନିବାରଣର ସମସ୍ୟା; ବଣିକ ବଖାଣିଲେ କଳା ବଜାରର ଅନିଶ୍ଚିତ ଭାଗ୍ୟ; ଗାଦିଚ୍ୟୁତ ରାଜା ମୁହଁରୁ ଶୁଣିଲି ବିଳାସ-ବନ୍ଧୁର ବିଳାପ; ରାଜ-କର୍ମଚାରୀ ମୁହଁରୁ ଶୁଣିଲି ଜାତି-ବିଦ୍ୱେଷର ଉପାଖ୍ୟାନ; ମନ୍ତ୍ରୀର ପ୍ରଚ୍ଛନ୍ନ ଦୃପ୍ତିଭରା କଣ୍ଠରୁ ଶୁଣିଲି ଲୋକସେବକ ଜୀବନର ବିଶ୍ରାମହୀନ ବ୍ୟାପୃତ ଓ ଅନାବିଳ ଅସ୍ଥିରତା; ଅଧ୍ୟାପକ ମୁହଁରୁ ଶୁଣିଲି ଅଧ୍ୟାପନା ଜୀବନର ସାର୍ଥକ-ବ୍ୟର୍ଥତା; ଶିଳ୍ପୀ ମୁହଁରୁ ଶୁଣିଲି ରଙ୍ଗ-ତୂଳି ଲେଖନୀ ଜୀବନର ବ୍ୟର୍ଥ ସାର୍ଥକତା; ସାମ୍ବାଦିକ ମୁହଁରୁ ଶୁଣିଲି ମିଥ୍ୟା ଶୃଙ୍ଖଳାର ସମ୍ବାଦ, ଛାତ୍ର ମୁହଁରୁ ଶୁଣିଲି ଛାତ୍ର ସଂଗଠନ ଓ ଆନ୍ଦୋଳନର ଜାତୀୟ ଆବଶ୍ୟକତା; ରାଜନୈତିକ କର୍ମୀ ମୁହଁରୁ ଶୁଣିଲି 'ବାଦ' ଆସ୍ଫାଳନ ଓ ମତାନ୍ଧ ଦୃଷ୍ଟିର ଭାସ୍ୱର ଭବିଷ୍ୟ କଳ୍ପନା ।

ଏମାନେ କେହିହେଲେ ସନ୍ତୁଷ୍ଟ ନୁହନ୍ତି । ଅସନ୍ତୋଷ ଓ ଅଶାନ୍ତି ହୁଏତ ଜାଗୃତିର ପୂର୍ବାଭାସ ହୋଇପାରେ, କିନ୍ତୁ ଏ କିପରି ଜାଗୃତି ? ଏ ଜାଗୃତି କି ପୂର୍ବାପରଶୂନ୍ୟ ? ମନେହେଲା ଏ ଜୀବନ-ଲକ୍ଷଣରେ ଜାତୀୟ ପରଂପରାର ଚେତନା ଯେପରି ନାହିଁ । କାହା ମୁହଁରୁ ଶୁଣିଲିନି ଶୁଦ୍ଧା ମୁନି, ଅତିବଡ଼ୀ, କୃଷ୍ଣସିଂହ, ଗୋପାଳକୃଷ୍ଣ, ପଠାଣି ସାମନ୍ତ ଅବା ଉତ୍କଳମଣିଙ୍କ ନାମ । ଭୁଲରେ ସୁଦ୍ଧା କିଏ

ଉଲ୍ଲେଖ କଲାନି କୋଣାର୍କ ଅବା ପାରଦ୍ୱୀପର କଥା । ଅନୁଷ୍ଠାରୁ ପ୍ରେମ ପର୍ଯ୍ୟନ୍ତ, ପ୍ରସୂତି ଶାଳାରୁ ଶ୍ମଶାନ ପର୍ଯ୍ୟନ୍ତ ସବୁ ବିଷୟରେ ଶୁଣିଲି ରାଜନୀତି-ପ୍ରାଣ ବ୍ୟାଖ୍ୟା । ମହାନଦୀର ବନ୍ୟା ପରି ଜାତୀୟ ଜୀବନ ଭିତରେ ରାଜନୀତି ତାର କୂଳ ଲଙ୍ଘି ଯାଇଛି । ଫଳରେ ଅନ୍ୟମାନଙ୍କର ନିର୍ମଳ ଜୀବନ କୁଟିଳ ହୋଇ ଯାଉଛି; ଚାରିଆଡ଼େ ଗଣ୍ଡଗୋଳ ବଢ଼ୁଛି ।

ମୋର ମନର ଉକ୍ତ ଅବସ୍ଥା ଉପଶମିତ ହେବା ଦୂରେ ଥାଉ, ଅପରନ୍ତୁ କି ଏକ ପ୍ରକାର ଅବର୍ଣ୍ଣନୀୟ ଅବସନ୍ନତା ମତେ ଧୀରେ ଧୀରେ ଗ୍ରାସ କରି ଆସୁଥିଲା ।

ଦୁଇପଦାର୍ଥ ଚିଠି ପାଇଥିଲି : "......... କାହ୍ନୁ ଦାନ ପାଇଁ ପୁସ୍ତି ଯାଉଚ ଶୁଣି ଆନନ୍ଦିତ ହୋଇଚି । ଓଡ଼ିଶାର ବିଭିନ୍ନ ସ୍ଥାନ ବୁଲି ଦେଖିବା ଓ ସ୍ଥାନ ଚରିତ୍ର ଅନୁଧ୍ୟାନ କରିବା ତମ ପକ୍ଷରେ ନିଶ୍ଚୟ ହିତକର ହେବ । ଆମର ଲେଖକମାନେ ଘରର ଏରୁଣ୍ଡି ନଡେଇଁ ଓଡ଼ିଶାର ଚରିତ୍ର ଫୁଟାଇବାକୁ ଦାବୀଦାର ହୋଇଥାନ୍ତି । ସୁତରାଂ ସେମାନଙ୍କ ରଚନାରେ ସ୍ଥାନୀୟ ରୂପ ଓ ଗୁଣ ବହୁଳ ଭାବରେ ରହିଯାଏ । ଭାଷାରେ ଓ ଚରିତ୍ର ଚିତ୍ରଣରେ କୌଣସି ଆଧୁନିକ ଓଡ଼ିଆ ଲେଖକ ସ୍ଥାନୀୟତା ଦୋଷରୁ ମୁକ୍ତ ନୁହନ୍ତି । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସ୍ଥାନୀୟତା ଗୋଟାଏ ବି ସମସ୍ୟା । କିଏ ଶପଥ କରି କହି ପାରିବ ଯେ ତା' ଅଞ୍ଚଳର ଭାଷା କେବଳ ବିଶୁଦ୍ଧ ? ସେ କହିଲେ ବା ଅନ୍ୟ ଅଞ୍ଚଳର ଲୋକ ମାନିବ କାହିଁକି ? ଓଡ଼ିଶାର ସବୁ ଅଞ୍ଚଳରୁ ବିଶେଷତଃ ଦକ୍ଷିଣ ଓ ପଶ୍ଚିମ ଖଣ୍ଡରୁ ଯଦି ଶୁଦ୍ଧ, ଖାଣ୍ଟି ଓଡ଼ିଆ ଶବ୍ଦ ବାଛି ବାଛି ସାହିତ୍ୟ ଭିତରକୁ ନଆଣିଲେ ଏବଂ ସେ ସବୁ ଶବ୍ଦ ଶିଶୁପାଠ୍ୟରୁ ପ୍ରଚଳିତ ନକଲେ

ଓଡ଼ିଆରେ ଯେବେ ଜାତୀୟ ସାହିତ୍ୟ ଗଢ଼ି ଉଠିବାର ଦୁଷ୍କର, ଅଧିକନ୍ତୁ ଏହା ଜାତୀୟ ସଂହତିକୁ ବ୍ୟାହତ କରିବ । ଆମ ଲେଖକମାନେ ବଙ୍ଗଳା, ହିନ୍ଦୀ, ତେଲୁଗୁ ଶବ୍ଦ ଓଡ଼ିଆ ସାହିତ୍ୟ ଭିତରକୁ ଆଣିବା ପସନ୍ଦ କରନ୍ତି ସିନା ଖାଣ୍ଟି ଓଡ଼ିଆ ଶବ୍ଦ ଶୁଣିଲେ ନାକଟା କୁଞ୍ଚନ କରନ୍ତି । ଥାଉ, ସେ ସବୁ ତମର ସମସ୍ୟା । ମୋର ସେଥିରେ କ'ଣ ଅଛି ?

"ବହୁତ ସ୍ଥାନ ବୁଲାଣି, ବହୁତ କିଛି ଦେଖିଲଣି । ସତରେ ତମ ପ୍ରତି ବଡ଼ ଈର୍ଷା ହେଉଛି । ଓଡ଼ିଶା ସାରା ବୁଲି ଦେଖିବାପାଇଁ ମୋର ବି ବଡ଼ ଆଗ୍ରହ । କିନ୍ତୁ ତମ ସାଥିରେ ଯାଆନ୍ତି କିପରି ! ତମ ଲେଖକମାନଙ୍କ ଆଖିରେ ମହିଳାବନ୍ଧୁ ଅର୍ଥ ପ୍ରେମିକା । ଦେହକୁ ଉତ୍ତର ଦିବାର ସାମର୍ଥ୍ୟ ତମମାନଙ୍କର ନାହିଁ ବୋଲି ପ୍ରତିବର୍ଷ 'ଭଞ୍ଜଜୟନ୍ତୀ'ରେ ତମେମାନେ ଘୋଷଣା କରିଥାଅ ବଡ଼ ନିର୍ଲଜ୍ଜ ତଥା ନିଷ୍ଠାପର ଭାବରେ ।

"ଆତ୍ମ-ପରିଚୟ ଆଦର ପାଇନ ଶୁଣି ବଡ଼ ଦୁଃଖ ଲାଗୁଛି । ତମ ନାଁ'ଟି ଅନ୍ତତଃ ପାଶୋର ଯାଇନ ଛି ? ଯଦି ପାଶୋର ଯାଇଥାଅ ଜଣାଇଲେ ଲେଖି ପଠାଇ ଦେବି । ମୁଁ ପାଶୋର ଯାଇନ ।"

ଯେଉଁଠି କାଳୀର ନାଁ ମଲ୍ଲୀ ଆଉ କଣାର ନାଁ ପଦ୍ମଲୋଚନ ହୋଇପାରେ, ଯେଉଁଠି ବାରବାଟୀର ବୀରରକ୍ତ ପବିତ୍ର ଭୂମିରେ ସୁରାପାନ, ଅବୈଧ ଚୁମ୍ବନ ତଥା ଯାବତୀୟ ଅଶ୍ଳୀଳତାର ଅବାର ଉତ୍ସବ ଅବାଧ ଭାବେ ଚାଲିପାରେ, ଯେଉଁଠି ଲୋକଶାସନ ନାମରେ ଲୋକପୀଡ଼ନ ନୀତି ହୁଏ ସେଇଠି ନାମର କି ମହତ୍ତ୍ୱ ରହିପାରେ ? ନାମ ତ ଆଉ ପରିଚୟ ନୁହେଁ । ସୁଷମା ମୋର ନାମ ପାଶୋର

ଯାଇନ । ଅପାଶୋର ହୋଇଥିବାରୁ ନୁହେଁ କାଳକ୍ରମେ ହୁଏତ ପାଶୋର ଯିବା । ମଣିଷ ବହୁତ ଖାଣ୍ଟି ପାଶୋରେ । କେତେ କଥା ମନେ ରଖିବା ପାଇଁ ଆଉ କେତେ କଥା ପାଶୋର ଦେବାକୁ ପଡ଼େ । କିନ୍ତୁ ଗୋଟାଏ ଜାତୀୟ ସ୍ରଷ୍ଟା ଜାତି ନିଜକୁ ପାଶୋର ଯିବା କି ସମ୍ଭବ ?

( ୩ )

ସମୁଦ୍ର ବେଳାରେ ବସିଥିଲି । ଗୋଟାଏ ପରେ ଗୋଟାଏ କଥା ଚାଲି ବଉଦ ଭଳି ଭାସି ଯାଉଥିଲା ସ୍ମୃତିପଟରେ । ମନେ ପଡ଼ୁଥିଲା ଓଡ଼ିଆ ସାହିତ୍ୟ ସମ୍ବନ୍ଧେ ସୁଷମାର ମନ୍ତବ୍ୟ, ମନେ ପଡ଼ୁଥିଲା ସକାଳର ସେ ବିଚିତ୍ର ଘଟଣା — ଗୋଲ ଗୋଲ ପଥର କେତୋଟି ଧରି ପିଲାଟି ତାର ମନଇଚ୍ଛା ଖେଳୁଥିଲା । କିନ୍ତୁ ତା'କୋଳର ସେ ପଥର ଦେଖିବା ମାତ୍ରେ, ମାଆ ପେଟ ଭିତରେ ଛୁଆ ବୁଲିଲା ପରି, ମୋର ପେଟ ଭିତରେ ଇମିତି କୋହ କୁରାଳିଲା କାହିଁକି ? ମନେ ପଡ଼ୁଥିଲା ସମ୍ବଲପୁରର ସେଇ କବି ବନ୍ଧୁଙ୍କ କଥା :

"ଗୋଟାଏ ରାଜନୈତିକ ପରିସୀମା ଭିତରେ ଆମେମାନେ ରହୁଥାଇଁ ସତ, କିନ୍ତୁ ଆମ ଭିତରେ ଜାତୀୟ ସଂହତି କାହିଁ ? ଆଞ୍ଚଳିକ ଅଖଣ୍ଡତା ଓ ଜାତୀୟ ସଂହତି ଏକ କଥା ନୁହେଁ । ଆଚ୍ଛା, ଏପରି କେଉଁ ଏକ ଓଡ଼ିଆ ପର୍ବର ନାଁ କହି ହେବ ଯାହା ସମାନ ଗୁରୁତ୍ୱ ସହକାରେ ସମଗ୍ର ଓଡ଼ିଶାରେ ଘରେ ଘରେ ପାଳିତ ହୋଇ ଥାଏ ? ଆମ ଅଞ୍ଚଳରେ 'ନୁଆଖିଆ' ସବୁଠାରୁ ବଡ଼ ପର୍ବ । ଉତ୍ତରରେ 'ରଜ' ଆଉ ଦକ୍ଷିଣରେ 'କୁମାର ପୂର୍ଣ୍ଣିମା' । କିନ୍ତୁ ଏ ପଟେ ବଙ୍ଗରେ ଦଶହରା ଏବଂ ସେ ପଟେ ଆନ୍ଧ୍ରରେ ମକର

ସଂକ୍ରାନ୍ତ ପର ସାର୍ବଜନୀନ ପର୍ବ ଆଉର କାହିଁ ? ଜାତୀୟ ସଂହତି ପଥର ଆଜ ଏକ ବଡ଼ ଅନ୍ତରାୟ ହୋଇଛି ଉଗ୍ର ଆଞ୍ଚଳିକ ଭାବ । ମୁହଁରେ ଅବଶ୍ୟ ଏକଥା କେହି ସ୍ୱୀକାର କରିବେନି, ବିଶେଷତଃ ସେଇମାନେ ଯେଉଁମାନେ ରାଜଧାନୀ ସୁବିଧା ନେଇ ରାତିକ ଭିତରେ ଟଙ୍କାରୁ ତାଲ ହୋଇ ଉଠିଛନ୍ତି । କିନ୍ତୁ କୌଣସି କଥାକୁ ଅସ୍ୱୀକାର କରିଦେବା ତାର ସମାଧାନ ନୁହେଁ; ଆମେରିକା ଯେପରି ପ୍ରଜାତନ୍ତ୍ର ଚୀନକୁ ସ୍ୱୀକାର କରୁନି । ମୋର ନିଜ କଥା କହିଲେ, କଟକ ଜିଲ୍ଲାର ଜଣେ ତଥାକଥିତ ପ୍ରଗତିଶୀଳ ରାଜନୈତିକ ବୁଦ୍ଧିଜୀବୀ ମୋ ସଙ୍ଗେ ଏପରି ଭାବେ ଆଲୋଚନା କଲେ ଯେ ସେ ଦିନରୁ ମୁଁ ନିଜକୁ ପ୍ରଥମେ ସମ୍ବଲପୁରୀ ବୋଲି ଭାବିବାକୁ ବାଧ ହୋଇଛି ।

କ'ଣ ଏ ଜାତି ! ଅନ୍ତର୍ବିବାଦଇ କଣ ଏହାର ଏକମାତ୍ର ବିଶିଷ୍ଟତା ? ଯେଉଁ ଜାତି ଏତେ ବଡ଼ ଇତିହାସ ଓ ସଂସ୍କୃତି ଗଢ଼ିଗଲା ଏମାନେ କଣ ତାର ବଂଶଧର ? ଏ ଅଧଃପତନର ତୁଳନା ନାହିଁ ।

ସମ୍ମୁଖରେ ଅଶାନ୍ତ ସାଗର ପିଟି ହେଉଛି କୂଳରେ । ଦେଖା ବିହରଣ ବିଳାସୀଙ୍କ ଭିତରୁ ଅଧିକାଂଶ ଓଡ଼ିଶା ବାହାରର ଲୋକ । ସାଗର ଗର୍ଜନ କାନରେ ନ ପଡ଼ୁ ବୋଲି ଜାତିର ବଡ଼ ଠାକୁରଙ୍କ ବଡ ଦେଉଳ ଗୃହପଟେ ଏକଦା ମେଘନାଦ ପାଚେରୀ ଠିଆ କରାଯାଇ ଥିଲା । କିନ୍ତୁ ସେ ପାଚେରୀ ଆଜି ସମୁଦ୍ର ଆଉ ଏ ଜାତି ମଝିରେ ଠିଆ ହୋଇ ଯାଇଛି । ଡଙ୍ଗା ନାଁ ପଡ଼ିଲେ ଓଡ଼ିଆର ପାଦ ଅଟୁକୁଛି । ସମୁଦ୍ର କୂଳକୁ ଆସିବା ପାଇଁ ମଧ୍ୟ ଡର ! ବୋଇତ ରହି ଯାଇଛି ମୁରୁଜ ଚିତାରେ; ଚଉଁରା ତଳେ । ଯେଉଁଠି ପ୍ରତି ସଞ୍ଜରେ କଲିକତା ପ୍ରବାସୀ ମାଳି, ବୋଷେୟା, ବୋଝିଆ, ଚଟକଲ

ମଜୁରିଆ ପାଇଁ ଲମ୍ବର ଝଲାତା ଜଲେ । ଯାଏବ ଘର ମୁଅ ମାଡ଼ୁଆଡ଼ ଶ୍ରେଷ୍ଠୀ ଘରେ ଗୋଡ଼ି ପଶୁଛ ।

ବିବଶ ହୋଇ ଉଠିଥାଇ । ମନେହେଲା, କି ଗୋଟାଏ ଜ୍ୱାଳା ଯେପରି ମୋର ତଳପାରୁ ତାଳୁ ଯାଏ ମାଡ଼ ଯାଉଛି ।

ମୁଁ ଯେ ଅତ୍ୟନ୍ତ ଅନ୍ୟମନସ୍କ ହୋଇପଡ଼ ଥିଲି, ଉପଲବ୍ଧି କଲି ପଥୁରିଆ ସାହି ମଝିରେ ଅକସ୍ମାତ୍ ଅଟକି ଯିବା ଫଳରେ । ଜଣେ ବୁଢ଼ା—ବୟସ ସତୁରି ସେପାରି ନିଶ୍ଚୟ, ମୁହଁରେ ମୁହେଁ ଧଳା ଦାଢ଼ି, ଲଣ୍ଡାମୁଣ୍ଡ, ପିନ୍ଧା ଆଉ ଚଦର ଦୁଇଟି ମସିଆ ଗାମୁଛା, ହାତରେ ଗୋଟିଏ କାଛ-ଆଉଜା ମୁଗୁର—ମୋ ଆଡ଼କୁ ଝପଟି ଆସୁଛି । ଲଙ୍ଗଳା, ଅଧା ଲଙ୍ଗଳା ଦଳେ ପିଲା ତା' ପଛରେ ତାଳି ମାରି ଗୋଡ଼ାଇଛନ୍ତି !

> "ବିଶ୍ୱ ମହାରଣି ମୁଗୁର ହାଣ
> ଗଢ଼ିବ ହେଉଳ କରିଛ ପଣ ।"

ମୋ ପାଖରେ ଠିଆ ହୋଇ ପଡ଼ ବୁଢ଼ା ଧଇଁ ସଇଁ ହେଉଥାଏ । କପାଳରେ ଟୋପା ଟୋପା ଝାଳ, ଆଖିରେ ଆତଙ୍କିତ ଚାହାଣୀ, କି ଏକପ୍ରକାର ଅଜ୍ଞାତ ବିହ୍ୱଳତା ବୁଢାର ମୁହଁଟିକୁ ଆଚ୍ଛନ୍ନ କରିଥିଲା । ବିପଦ ମୁହଁରୁ ସୁତା ଖିଅଟେ ଖସି ଆସିଲା ବେଳେ ମଣିଷ ଯେପରି ଟିକଏ କମିତି ଆକଟା ହୋଇଯାଇ ଥାଏ, ସେପରି । ମୋ ପାଖରେ ବୁଢ଼ାକୁ ରହିଯିବା ଦେଖି ପିଲାମାନେ ଫେରିଗଲେ । ତଥାପି କିନ୍ତୁ ଯେପରି ଜାଣନ୍ତିନି, ଦୁଇ ତିନୋଟା ଦଗୁଲିଆ ବସି ରହିଲେ ଆଖପାଖ ପିଣ୍ଡା ଉପରେ, ମୁଁ ଘୁଞ୍ଚିବା ମାତ୍ରେ ପୁଣି ଯେପରି ଲାଗିଯିବେ ବୁଢ଼ା ପଛରେ ।

"ଆପଣ କେଉଁଠିକି ଯିବେ ?" ପଚାରିଲି । "ଏ ରାସ୍ତା ଶେଷରେ ମୋର ଘର" ବୁଢ଼ା କହିଲା କୃତଜ୍ଞ କଣ୍ଠରେ ।

"ଚାଲନ୍ତୁ, ମୁଁ ପହଞ୍ଚାଇ ଦେଇ ଆସେଁ ।"

ଘର ଭିତରେ ମୁଁ ଯାଇ ଦଣ୍ଡେ ନ ବସିଲେ ତାର ମନରେ ଯେପରି ଗୋଟାଏ ବଡ଼ ଅସନ୍ତୋଷ ରହିଯିବ, ବୁଢ଼ା ବିନୀତ ଭାବେ ଜଣାଇ ଦେଲା । ବାହାର ବହିର୍ଖଣ୍ଡ ଆଲୋକରେ ଘରଟିର ରୂପ ବାହାରୁ ଯାହା ଦିଶୁଥିଲା ସେଥିରେ ଘର ଭିତରେ ପଶିବା ଲାଗି କାହାର ହେଲେ ଲୋଭ ବଳନ୍ତା ନାହିଁ । କିନ୍ତୁ ଫଟା କବାଟ ଫାଙ୍କ ଦେଇ ଘର ଭିତରର ଯେଉଁ କ୍ଷୀଣ ଆଲୋକ ଆସି ଆଖିରେ ଲାଗୁଥିଲା, ମନେ ହେଉଥିଲା ବୁଢ଼ାର ନିମନ୍ତ୍ରଣ ପଛରେ ଗୁପ୍ତ କୌଣସି ରହସ୍ୟ ଉଦ୍‌ଘାଟନର ଇଙ୍ଗିତ ଯେପରି ପ୍ରଚ୍ଛନ୍ନ ରହିଛି । ଏଇ ଅନୁଭୂତି ମୋର ମନରେ ଏକ ପ୍ରକାର ଭୟ ମିଶ୍ରିତ କୌତୂହଳ ଉଦ୍ରେକ କରୁଥିଲା । ତଥାପି, ଅଜ୍ଞାତର ଆକର୍ଷଣରେ ମୁହ୍ୟମାନ, ବୁଢ଼ାକୁ ଅନୁସରି ଗଲି ଘର ଭିତରକୁ ।

( ୪ )

ଦାଣ୍ଡ ବଖରା, ତାପରେ ଭିତର କୋଠା, ତାପରେ ମଝି ଅଗଣା ପାର ହୋଇ ଆମେ ଦକ୍ଷିଣ ପାର୍ଶ୍ୱର ଗୋଟାଏ ଘର ଆଗରେ ଅଟକିଲୁ । ଘର ଭିତରେ କାହାର ସୁଁ ଶବ୍ଦ ନାହିଁ । ଗୋଟାଏ ଝିଟିପିଟି ବି କେଉଁଠି ଟିକ୍ ଟିକ୍ କରୁନି । ଆଲୁଅ ମଧ୍ୟ ନାହିଁ । ବିସ୍ମିତ ହେଉଥାଏ, ଏଇଟା କାହାର ବାସଗୃହ ନା ବହୁ ଦିନରୁ ପରିତ୍ୟକ୍ତ କୌଣସି ରହସ୍ୟାବୃତ ମନ୍ଦିର ! କାରଣ ମୋର ଚଉପାଖରେ ମୁଁ କୌଣସି ଘରୁଆଳି ସ୍ପର୍ଶ ଅନୁଭବ କରିପାରୁ ନ

ଥିଲି । ଗମ୍ଭିରର ଦ୍ୱାର ଖୋଲି ବୁଢ଼ା ଭିତରେ ପଶିଲା ଏବଂ ମୋର ପଛେ ପଛେ ପୁଣି ଦ୍ୱାର ବନ୍ଦ କରିଦେଲା । ବୁଢ଼ାର ଏ ଆଚରଣ ଦେଖି ମନେ ହେଲା ସେ ଯେପରି କୌଣସି ଗୁପ୍ତ ଭଣ୍ଡାରର ସନ୍ଧାନ ମୋ ବ୍ୟତୀତ ଅନ୍ୟ କାହା ସଙ୍ଗେ ଭାଗ କରିବାକୁ ରାଜି ନୁହେଁ ।

ମୁହଁ ଉପରେ ପାଞ୍ଚ ସାତ ଖିଅ ବୁଢିଆଣି ସୂତା ଲାଗି ଯାଉଥାଏ, ପୋଛି ପୋଛି ଗମ୍ଭିରା ଭିତରେ ପ୍ରବେଶ କରିବା ମାତ୍ରେ ଅନୁଭବ କଲି ମୁଁ ଯେପରି ଅଜ୍ଞାତ କେଉଁ ଏକ ବନ୍ଦ ସନ୍ତସନ୍ତିଆ ଘରେ ବନ୍ଦୀ ହୋଇ ଯାଉଛି । ଯୁଗ ଯୁଗ ଧରି ଏଥିରେ ଆଲୋକ ଓ ଉତ୍ତାପ ଯେପରି ବାରଣ । ତଳୁ ଏକ ପ୍ରକାର ନିଶ୍ୱାସ-ଉଷ୍ଣ ବାଷ୍ପ ଉଠୁଥିଲା ଆଉ ସେଥିରେ ମୁଁ ଆବୃତ ହୋଇ ଯାଉଥିଲି । ଅଣ୍ଟା ଉପରୁ ମେରୁ ହାଡ଼ ସିଧା ବର୍ଚ୍ଛା ମାରିଲେ ଦେହ ଯେପରି ଶୀତେଇ ଯାଏ, ମୋର ସେ ଭଳି ଅବସ୍ଥା ହୋଇଥିଲା । ଘର ଭିତରୁ ପଦାକୁ ବାହାରି ପଡ଼ିଲେ ମୁଁ ଯେପରି ପୁନର୍ଜନ୍ମ ଲଭିବି—ଉତ୍ସୁକତା ହେଇ ବାହାରି ପଡ଼ିବାକୁ ବିକଳ ହେଉଚି, ଏତିକିବେଳେ ସେଇ ଅନ୍ଧକାର ଭିତରୁ ଆକାଶବାଣୀ ଭଳି ବୁଢାର ସ୍ୱର ଶୁଭିଲା—"ମୁହୂର୍ତ୍ତେ ଅପେକ୍ଷା କରନ୍ତୁ, ମୁଁ ଦୀପଟା ଲଗାଇ ଦଏ ।"

କିଭଳି ବୁଝାଇବି ସେ ଅନୁଭୂତି ? ଗୋଟାଏ ପାଣି ପାତ୍ରରେ ଟିକେଏ ରଙ୍ଗ ପକାଇ ଦେଲେ ତାହା ଯେପରି ଧୀରେ ଧୀରେ ମିଳାଇ ଯାଏ, ମୁଁ ସେପରି ମିଶି ଯାଉଥିଲି ସେ ଅନ୍ଧକାର ଦେହରେ । ମୋର ଆକାର, ଓଜନ, ଭର, ଆପେକ୍ଷିକ ଗୁରୁତ୍ୱ, ଆଭ୍ୟନ୍ତରୀଣ ଗତି ସବୁ ଯେପରି ଲୀନ ହୋଇ ଯାଉଥିଲା ସେଇ ଆକାରହୀନ ଅନ୍ଧକାର ଦେହରେ । ତାକୁ ଠିକ୍ ଅନ୍ଧକାର ବୋଲି ମଧ୍ୟ କହି ହେବନି କାରଣ ମୋର ଦେହହୀନ ପଞ୍ଚେନ୍ଦ୍ରିୟର ଏକ ସମ୍ମିଳିତ,

ବିରାଟ ତଥା ଅବ୍ୟକ୍ତ ଜ୍ଞାନ ଦେଇ ମୁଁ ଉପଲବ୍ଧି କରି ପାରୁଥିଲି ଏକ ପ୍ରକାର ଧାରଣାତୀତ ପାରଲୌକିକ ଆଲୋକ ଯାହା ପୂର୍ଣ୍ଣଗ୍ରାସ ସୂର୍ଯ୍ୟଗ୍ରହଣର ଆଲୋକ ଭଳି ମ୍ଳାନ ତଥା ଭୀତିପ୍ରଦ ଏବଂ ଯେଉଁ ଆଲୋକରେ ପଥ ଧାରି ପ୍ରେତାତ୍ମା ପିତୃଲୋକ ପର୍ଯ୍ୟନ୍ତ ଯାତ୍ରା କରିବାର ବୃତ୍ତାନ୍ତ ପୁରାଣମାନଙ୍କରେ ବର୍ଣ୍ଣିତ ଅଛି ।

ସେହି ଅପାର୍ଥିବ ଆଲୋକରେ, ଛାୟାଦେହୀର ଭଳି, ମୋର ବିସ୍ମିତ ଦୃଷ୍ଟି ସମ୍ମୁଖରେ ଗୋଟିଏ ପରେ ଗୋଟିଏ ଅତିକ୍ରାନ୍ତୀୟ ଦୃଶ୍ୟ ଉନ୍ମୋଚିତ ହେଉଥିଲା ।

ଏକାମ୍ର କାନନରେ ମୁଁ ଦେଖୁଥିଲି ପ୍ରାୟ ଏକ ହଜାର ବର୍ଷ ତଳର ଶିବରାତ୍ରି ମେଳା । ସହସ୍ର ସହସ୍ର ଦୀପର ଆଲୋକରେ ଆଲୋକିତ କାନନଭୂମି; ଶ୍ରେଣି ଶ୍ରେଣି ପୁଷ୍ପ, ମାଲ୍ୟ, ବିଲ୍ୱପତ୍ର ଓ କଦଳୀ, ନାରିକେଳର ବିପଣୀ, ସ୍ତୂପୀକୃତ 'ବିଭିନ୍ନ ପ୍ରକାର କ୍ଷୁଧା ଉଦ୍ରେକକାରୀ ମିଷ୍ଟାନ୍ନ ଦ୍ରବ୍ୟ, ଉଜ୍ଜଳୀୟ ଭାସ୍କର୍ଯ୍ୟ ଓ ବସ୍ତ୍ରଶିଳ୍ପର କେତେ ମନୋରମ, ମହନୀୟ ସମ୍ଭାର, କାହିଁ ଶିବଭକ୍ତର ଲୀଳାଭିନୟ; କାହିଁ ଆମ୍ରକୁଞ୍ଜ ଅନ୍ତରାଳରେ ପ୍ରେମିକ ପ୍ରେମିକାର ପ୍ରଣୟ ଗୁଞ୍ଜନ, ଧୂପ, ଗୁଗ୍‌ଗୁଳ ଓ ଚନ୍ଦନ ଗନ୍ଧରେ ଆମୋଦିତ ମନ୍ଦ ସମୀରଣ, ତାରକା ଖଚିତ ନିର୍ମଳ, ନିର୍ଲିପ୍ତ ଆକାଶର ପ୍ରଶାନ୍ତି, ଅଗଣିତ ହିନ୍ଦୁ, ବୌଦ୍ଧ ଓ ଜୈନର ଏହି ଉତ୍ସବ-ପ୍ରାଣ ମହା ସମ୍ମେଳନ ମତେ ପରମ ଆନନ୍ଦରେ ଅଭିଭୂତ କରିଥିଲା..................।

ଚନ୍ଦ୍ରଭାଗା ତୀରରେ ଅବସ୍ଥିତ, ଉତ୍କଳ ଅମରାବତୀ କୋଣାର୍କ ନଗରୀର ସୁରମ୍ୟ ପ୍ରାସାଦମାଳା, ଫଳପୁଷ୍ପଶୋଭିତ ପ୍ରମୋଦ ଉଦ୍ୟାନ, କେତେ ଦୁର୍ଲଭ ତଥା ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀର ଶ୍ରେଣୀ ଶ୍ରେଣୀ

ବିପଣୀ, ଯାଦୁକ୍ରୀଡ଼ା ମଞ୍ଚ, ନାଟ୍ୟଶାଳା, ହିନ୍ଦୁ ଦେବାଳୟ, ଜୈନ ମନ୍ଦିର ଓ ବୌଦ୍ଧ ବିହାର ଉପରେ ମୋର ଦୃଷ୍ଟି ଭାସି ଭାସି ଶେଷରେ ଆସି ଲାଗିଥିଲା ସୂର୍ଯ୍ୟ ମନ୍ଦିର ଗାତ୍ରରେ । ଚବିଶଟି ଚକ୍ର ଓ ସାତଟି ଅଶ୍ୱବିଶିଷ୍ଟ ଏହି ରଥାକୃତି ମନ୍ଦିରର ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ କୌଶଳ ବର୍ଣ୍ଣନାତୀତ । ମନ୍ଦିରର ସମ୍ମୁଖ ଦିଗରେ, ଅନତିଦୂରରେ ନଗରୀର ବିରାଟ ପୋତାଶ୍ରୟ ଏବଂ ପାର୍ଶ୍ୱରେ ପ୍ରବାହିତା ଚନ୍ଦ୍ରଭାଗା । ନଦୀ ଓ ସମୁଦ୍ର ବକ୍ଷରେ ଅଗଣିତ ନୌକା ଓ ବୋଇତର ସମାବେଶ । ଚନ୍ଦ୍ରଭାଗାରେ ନୌକା ବିହାର ନଗରବାସୀଙ୍କର ବିଶିଷ୍ଟ ଅବସର ବିନୋଦନ । ନଗରୀ ଭିତରେ, ମନ୍ଦିର ବେଢ଼ାରେ, ପୋତାଶ୍ରୟରେ ଓ ନଦୀତୀରରେ ସର୍ବତ୍ର ଲୋକାରଣ୍ୟ । ପ୍ରତ୍ୟେକ ଲୋକଙ୍କ ବେଶଭୂଷା, ଗତିବିଧି ସୌଭାଗ୍ୟ ଓ ସମୃଦ୍ଧିର ପରିଚୟ ଦେଉଥିଲା ।

ଗୋଟାଏ ବିଶାଳ ବୋଇତ ପୋତାଶ୍ରୟ ଛାଡୁଛି ସୁଦୂର ପ୍ରାଚ୍ୟ ଅଭିମୁଖେ । ସାଧବ ଘର କୁଳବଧୂମାନେ ହୁଳହୁଳି ଓ ଶଙ୍ଖ ଧ୍ୱନି କରି ବୋଇତ ବନ୍ଦାଉଛନ୍ତି ଏବଂ ଶ୍ୱେତାମ୍ବର, ଶ୍ରମଣ ଓ ବ୍ରାହ୍ମଣମାନେ ଅଙ୍ଗୋପାଙ୍ଗ ତ୍ରିପିଟକ ଓ ବେଦର ଯାତ୍ରାମଙ୍ଗଳ ମନ୍ତ୍ରମାନ ଉଚ୍ଚାରଣ କରୁଛନ୍ତି ! ବୃଦ୍ଧା ଯଶୋବନ୍ତୀର ନନ୍ଦନ ସଙ୍ଖାଳି ଶ୍ରୀନାଥ ଏହି ବୋଇତରେ ପ୍ରଥମ ଥର ପାଇଁ ବାଲି ଯାତ୍ରା କରୁଛି । ବାଲିର ସବୁ ବଡ଼ ବଡ଼ ମହାଜନଙ୍କ ପାଖରେ ଦିନେ ତାର ପିତାର ସଉଦା ଚାଲୁଥିଲା । କିନ୍ତୁ ତାର ବାଲ୍ୟ ବୟସରେ ପିତାର ମୃତ୍ୟୁ ଘଟିବା ଫଳରେ ବିଶ୍ୱାସଘାତକ ଭୃତ୍ୟ ଓ କର୍ମଚାରୀମାନେ ବ୍ୟବସାୟର ସମଗ୍ର ବିନ୍ୟାସ ଓ ବିସ୍ତାର ନଷ୍ଟ କରି ଦେଲେ । ଯୁବକ ଶ୍ରୀନାଥ ଆଜି ନିଃସ୍ୱ । କିନ୍ତୁ ସେ ପରାଜିତ ନୁହେଁ । ତାର ଉତ୍ସାହ ଅଦମ୍ୟ; ବିଶ୍ୱାସ ଅଖଣ୍ଡ । ସେ ଯାଉଛି ବାଲିର ମହାଜନମାନଙ୍କ ପାଖରୁ ସଉଦାର ବରାଦ

ଆଣି ତାର ପିତାର ବ୍ୟବସାୟ ପୁଣି ଉଦ୍ଧାର କରିବ । ବୋଇତ ଗୁଡ଼ିକ ଯାଉଛି ସାଗର ଭିତରକୁ । ଅନ୍ୟାନ୍ୟ କୂଳବାଳାମାନେ ସେଥିା ଘରକୁ ଫେରିଲେଣି । ସମ୍ବଳହୀନ ବଧୂଟି ସଜଳ ଆଖିରେ ଚାହିଁ ରହିଛି ବୋଇତର ଯାତ୍ରା ପଥକୁ············।

ଫାଲ୍‌ଗୁନ ଶେଷ ଆକାଶରେ ତ୍ରୟୋଦଶୀର ଚନ୍ଦ୍ର । ରଜତ କିରଣରେ ଚନ୍ଦ୍ରଭାଗାର ବକ୍ଷ ଝଲମଲ ହେଉଛି । ରାତି ତୃତୀୟ ପ୍ରହର ଶେଷ ପ୍ରାୟ । ନୌକା-ବିହାର-ବିଳାସୀମାନେ ଅନେକ ସମୟ ତଳୁ ନଦୀ ତୀରରୁ ବିଦାୟ ନେଲେଣି । କୋଣାର୍କ ମନ୍ଦିରର ଉତ୍ତର ଦ୍ୱାର ଘାଟରେ ଗୋଟିଏ ସୁସଜ୍ଜିତ, ସୁରମ୍ୟ ନୌକା ଅପେକ୍ଷା କରିଛି । ଧୀର ଦକ୍ଷିଣା ସ୍ପର୍ଶରେ ଚନ୍ଦ୍ରଭାଗାର ପରିପୂର୍ଣ୍ଣ ବକ୍ଷରେ ଆବେଗର ତରଙ୍ଗ ଖେଳି ଯାଉଛି । ଅପର ତୀରରେ, ଦୂର ଦୂର ଘାଟମାନଙ୍କରେ ଦୀପ୍ତ ଆଲୋକ ଜୁଳୁଜୁଳୁ ପୋକ ଭଳି ଦେଖା ଯାଉଛି । ମନ୍ଦିରର ପୃଷ୍ଠ ଦେଶରୁ ଆସି ଦୁଇଟି ତରୁଣ ତରୁଣୀ ନୌକା ପାଖରେ ପହଞ୍ଚିଲେ । ନୌକା ଉପରକୁ ଉଠିବା ଲାଗି ତରୁଣ ତାର ସଙ୍ଗିନୀକୁ ଇଙ୍ଗିତ କଲା । କିନ୍ତୁ କିଛି ସମୟ ପର୍ଯ୍ୟନ୍ତ ତରୁଣୀଟି ଛନଛନ ଭାବରେ ଘାଟର ଉଭୟ ପାର୍ଶ୍ୱକୁ ଚାହିଁବାରେ ଲାଗିଲା । ଶେଷରେ ତରୁଣର ପ୍ରସାରିତ ହାତ ଉପରେ ଭରା ଦେଇ ସେ ଉଠିଲା ନୌକା ଉପରକୁ ଏବଂ ତାର ପଛେ ପଛେ ତରୁଣ ମଧ୍ୟ ଉଠିଲା । ନାଉରୀ ନୌକା ଛାଡ଼ିଦେଲା ନଦୀ ବକ୍ଷକୁ । ସଜ୍ଜିତ ଆସନ ଉପରେ ଉଭୟେ ବସିଲେ । ଚାରିପାଶରେ ରଙ୍ଗିନ ରେଶମ ପରଦା ଟାଣିଦେଇ ତରୁଣ ନିବିଡ଼ ଆଲିଙ୍ଗନରେ ତରୁଣୀକୁ ଜଡ଼ାଇ ଧରିଲା ଏବଂ ବହୁତ ସମୟ ପର୍ଯ୍ୟନ୍ତ ତାର ପ୍ରଣୟ ପିପାସୀ ଅଧରରେ ଗାଢ଼ ଚୁମ୍ବନ ଚାପି ରଖିଲା । ପ୍ରଣୟୀର ପ୍ରମତ୍ତ ପୌରୁଷ ନିକଟରେ ନିଜର

ନବନୀତ କୋମଳ, ଆବେଗ ଉଦ୍‌ବେଳ ତନୁ ନୈବେଦ୍ୟ ଦେଇ ତରୁଣୀ ଆତ୍ମୋତ୍ସର୍ଗର ଦିବ୍ୟ ଆନନ୍ଦ ଉପଭୋଗ କରୁଥିଲା; ପ୍ରତ୍ୟେକ ଲୋମକୂପ ଦେଇ ସେ ପ୍ରୀତି ସୁଧା ପାନ କରୁଥିଲା; ପ୍ରଣୟୀର ଦେହ ସ୍ପର୍ଶ ଲୋଭରେ ସେ ତାର ମହାର୍ଘ ଝୀନ ପରିଧାନ ଛୁଞ୍ଚୁ ମଣିଥିଲା ।

କୋଣାର୍କ ନଗରୀର ଅନ୍ୟତମ ଅମୂଲ୍ୟ ରତ୍ନ, ଲକ୍ଷ ଯୁବକଙ୍କର ହୃଦୟର ରାଣୀ, ଅପରୂପ ରୂପଲାବଣ୍ୟମୟୀ, ରାଜନର୍ତ୍ତକୀ ବିଭାବତୀ ଆଜି ଦୀନ, ଅକିଞ୍ଚନ, ଗୁରଣ କବି ଭୂପତି କୋଳରେ ପ୍ରୀତି ମାଦକତାରେ ମୂର୍ଚ୍ଛିତ ହୋଇ ଯାଇଛି । ତାର ଦୀର୍ଘ ସାତ ବର୍ଷର ତପସ୍ୟା ଆଜି ପୂର୍ଣ୍ଣ ହୋଇଛି । ରାଜାର ଉଦ୍ଧତ ରାଜଦଣ୍ଡ ତାର ସଂକଳ୍ପ ଭଙ୍ଗ କରି ପାରିନି । ଏଇ ମୁହୂର୍ତ୍ତର ପୂର୍ଣ୍ଣତା ନେଇ ସେ ହସି ହସି ମୃତ୍ୟୁ ବରଣ କରିପାରେ ।

ଆକାଶରେ ତ୍ରୟୋଦଶୀର ଚନ୍ଦ୍ର । ନୌକା ଗ୍ଲୁଛି ସମ୍ବେଦନଶୀଳ ଚନ୍ଦ୍ରଭାଗା ବକ୍ଷରେ; ଧୀର, ବିଭୋର, ମଦାଳସଗତିରେ···।

( ୪ )

ମୁଁ ମୋର ଦେହକୁ ଫେରି ଆସିଲା ବେଳକୁ ଗମ୍ଭୀରୀ ଆଲୋକିତ ହୋଇ ସାରିଛି । ବୁଢ଼ା ମତେ ଗୁହଁଥିଲା କୌତୁହଳଭରି, ସ୍ନେହଶୀଳ ଆଖିରେ । ମାତ୍ର କେତୋଟି ମିନଟ ଭିତରେ ମୋର ସାରା ସବୁ ଅଭିଜ୍ଞତା ହୋଇଗଲା, ଯେଉଁଥିରେ ମୁଁ ନିଜକୁ ଓ ମୋର ପରିବେଶକୁ ନିଜର ବୋଲି ଗ୍ରହଣ କରିପାରୁ ନଥିଲି । ମୋର କାନ୍ଧରେ ହାତଟିଏ ରଖି ବୁଢ଼ା ସହାନୁଭୂତିଭରା କଣ୍ଠରେ କହିଲା, "କଣ ଭାବୁଛନ୍ତି ? ଏ ଘରେ ଯିଏ ପ୍ରବେଶ କରେ ପ୍ରଥମେ ଠିକ୍‌ଏ ଆପଣଙ୍କ ପରି ସ୍ୱପ୍ନାବିଷ୍ଟ ହୋଇପଡ଼େ ।"

ବୁଢ଼ାର କରସ୍ପର୍ଶ ମୋ ଦେହରେ ଜାଗତିକ ଜୀବନର ସଞ୍ଚାର ଆଣି ଦେଇଥିଲା । ମୋର ଆଖିରୁ ସ୍ୱପ୍ନଘୋର ଭାଙ୍ଗି ଯାଇଥିଲା । ଜଡ଼ା ଦୀପ ଆଲୋକରେ ମୋର ସମ୍ମୁଖରେ ମୁଁ ଏକ ଅପୂର୍ବ ବିଗ୍ରହ ଦେଖୁଥିଲି । ପ୍ରସ୍ଫୁଟିତ ପଦ୍ମ ଉପରେ ଆସୀନା ବିଲମ୍ବିତ ପଦ ଏକ ଅନିନ୍ଦ୍ୟ ସୁନ୍ଦର ନାରୀ ମୂର୍ତ୍ତି । ନୟନ ଦୁଇଟି କଳ୍ପନା ନିମଗ୍ନ । ଦକ୍ଷିଣ ହସ୍ତରେ ସ୍ୱସ୍ତି ମୁଦ୍ରା । ବାମ ହସ୍ତରେ ରତ୍ନପ୍ରଦୀପ । ମୂର୍ତ୍ତିର ଅଙ୍ଗ-ସୌଷ୍ଠବ ଓ ଯୌବନର ପୂର୍ଣ୍ଣିମା ସଙ୍ଗେ ଅଧରର ଅନନୁକରଣୀୟ ମନ୍ଦ ହାସ ଅନବଦ୍ୟ କେବଳ ନୁହେଁ, ଅଦୃଶ୍ୟସ୍ପର୍ଶୀ ଓ ଅନନ୍ତଗାମୀ ମନେ ହେଉଥିଲା । ଗଠନ ଶୈଳୀର ଶାସ୍ତ୍ରୀୟ ପ୍ରସନ୍ନ-ଗାମ୍ଭୀର୍ଯ୍ୟ ଓ ରେଖାବଳୀର ଛନ୍ଦ ତ୍ରୟୋଦଶ ଶତାବ୍ଦୀର ଉତ୍କଳୀୟ ଭାସ୍କର୍ଯ୍ୟର ପରାକାଷ୍ଠା ପ୍ରତିପାଦନ କରୁଥିଲା । ମୂର୍ତ୍ତିର ପରିଧାନ ଓ ଆଭୂଷଣ କୋଣାର୍କୀୟ କୁମାରୀ ଚିତ୍ରର—ସ୍ୱଳ୍ପ, ସାବଲୀଳ । ଜଡ଼ା ଦୀପର ସ୍ନିଗ୍ଧ ଆଲୋକ ମୂର୍ତ୍ତିଟିକୁ ଏକ ଅନିର୍ବଚନୀୟ ଲାବଣ୍ୟରେ ଅଭିଷିକ୍ତ କରିଥିଲା ।

"ଏହା କି ମୂର୍ତ୍ତି ?" ପଚାରିଲି ବିସ୍ମିତ ସ୍ୱରରେ । "ପ୍ରାଣଶକ୍ତି", ଶାନ୍ତ କଣ୍ଠରେ ବୁଢ଼ା ଉତ୍ତର ଦେଲା । ମୂର୍ତ୍ତି ଉପରେ ମୋର ଜିଜ୍ଞାସୁ ଦୃଷ୍ଟି ନିବଦ୍ଧ, ବୁଢ଼ା ମତେ ବୁଝାଇ ଯାଉଥିଲା ତାର ସ୍ରଷ୍ଟା-ସୁଲଭ ବିଶ୍ୱାସଭରା, ସ୍ପଷ୍ଟ କଣ୍ଠରେ, "ହେତୁ ଓ କାମ୍ୟ ଉପରେ ସୃଷ୍ଟି, ସ୍ଥିତି ଓ ଲୟ ନିର୍ଭର କରିଛି । କିନ୍ତୁ ଏ ସବୁରି ମୂଳରେ ରହିଛି ପ୍ରାଣ-ଶକ୍ତି । ହେତୁ ଓ କାମ୍ୟ ଉଭୟର କାରକ ହେଉଛି ପ୍ରାଣ-ଶକ୍ତି : 'କର କରାଉ ଥାଏ ମୁହିଁ, ମୋ ବିନୁ ଅନ୍ୟ ଗତି ନାହିଁ', ପ୍ରାଣ-ଶକ୍ତିର ତିନୋଟି ବିଭୂତି—କଳ୍ପନା, କର୍ମ ଓ କାମନାବହ୍ନୀନତା । କଳ୍ପନା ବିନା କର୍ମ ଅସମ୍ଭବ । କର୍ମହିଁ ସୃଷ୍ଟିର ଆଧାର । କାମନା କଳ୍ପିତ

ହେଲେ କର୍ମର ଶ୍ରୀହୀନ ଘଟେ ଏବଂ ଯାହା ପ୍ରକୃତ କର୍ମ ତାହା ସ୍ୱତଃସ୍ଫୂର୍ତ୍ତି ଭାବେ କାମନାର ଊର୍ଦ୍ଧ୍ୱକୁ ଉଠିଯାଏ ।"

ମୋର ଚିନ୍ତା ଦିଗନ୍ତରେ ଏକ ନୂତନ ଜ୍ଞାନ ଉଦିତ ହେଉଥିଲା । ପ୍ରାଣ-ଶକ୍ତି ସମ୍ବନ୍ଧେ ପାଶ୍ଚାତ୍ୟ ଓ ପ୍ରାଚ୍ୟ ଦର୍ଶନର ପାର୍ଥକ୍ୟ ମୁଁ ଉପଲବ୍ଧି କରିପାରୁ ଥିଲି । ସେହି ମୂର୍ତ୍ତିହିଁ ଥିଲା କାମନା ବିହୀନତାର ପ୍ରତୀକ । ମୋର ସମଗ୍ର ଦେହ ରୋମାଞ୍ଚିତ ହେଉଥିଲା । ଅନ୍ତର ଭିତରୁ କାନ୍ଦଣା କୁହୁରି ଉଠୁଥିଲା । ବହୁଳ ସ୍ୱରରେ କହିଲି, "ଧନ୍ୟ ଆପଣ ଆଉ ଧନ୍ୟ ଆପଣଙ୍କର ଏ ସୃଷ୍ଟି । ନିର୍ଜୀବ ଶିଳା ପିଣ୍ଡକୁ ଆପଣ ସଜୀବ କରି ପାରିଛନ୍ତି ।"

ନିର୍ଲିପ୍ତ ଭାବରେ ବୁଢ଼ା କହିଲା, "ଏ ମୂର୍ତ୍ତି ସୁଦର୍ଶନ ମହାପାତ୍ରର ପଚିଶ ବର୍ଷ ତପସ୍ୟାର ଫଳ । ପଥରକୁ ପ୍ରାଣ ଦେବା ଓଡ଼ିଆ ଶିଳ୍ପୀ ହାତରେହିଁ ସମ୍ଭବ । ପଥର ଶିଳ୍ପ ତାର ଅସ୍ଥି ମଜ୍ଜାଗତ । ପଥରର ଭାଷା ବୁଝିବା ଜ୍ଞାନ ତାର ସହଜାତ । ଓଡ଼ିଆ ଓ ପଥର ଏକାତ୍ମ ଓ ଅଭିନ୍ନ । ତାହାହିଁ ତାର ଆତ୍ମପରିଚୟ ।"

ବିଜୁଳି ଚମକ ଭଳି ଗୋଟାଏ ପଲକରେ ମୋ ଭିତରେ ଏକ ବିଚିତ୍ର ଆଲୋଡ଼ନ ମାଡ଼ିଗଲା । ମହାପାତ୍ରଙ୍କ ପାଦ ଦୁଇଟି ଜାବୁଡ଼ି ଧରି ବିକଳ କାନ୍ଦଣାରେ ଭାଙ୍ଗି ପଡ଼ିଲି । ସେଇ ଲୁହରେ ଭାସି ଯାଉଥିଲା ମୋର ମନର ସମସ୍ତ ଗ୍ଲାନି, ଅବସାଦ ଓ ଦ୍ୱନ୍ଦ୍ୱ ।

( ୬ )

ବିସ୍ମିତ ଚିତ୍ତରେ ସୁଷମା ଶୁଣୁଥିଲା ଏ ଅଶ୍ରୁତପୂର୍ବ କାହାଣୀ । କିଛି କ୍ଷଣ ନୀରବ ରହି ତାର ସ୍ୱଭାବସୁଲଭ ପରିହାସମିଶ୍ରିତ କଣ୍ଠରେ

ଶିଶୁ ଭଳି ହସି ହସି କହିଲି, "ଆତ୍ମପରିଚୟ ଶେଷରେ ପାଇଲି ଯାହାହେଉ ।"

"ଆତ୍ମପରିଚୟ କେବଳ ନୁହେଁ, ପ୍ରାଣ-ଶକ୍ତିର ସନ୍ଧାନ ମଧ୍ୟ ପାଇଛ ।"

"ସେଇ୍‌ ମୂର୍ତ୍ତି ଦେଖିକରୁ ?"

"ନା; ତୁମ ଭିତରୁ ।"

ସୁଷମା ପଣତରେ ମୁହଁ ଲୁଚାଇବାକୁ ଚାହିଁଲେ ପଣତଟିକୁ ଟାଣି ଧରିଲି । ତାର ଆନତ ଆନନର ଝଲକ୍କ-ପ୍ରସନ୍ନତା ମୋର ମନରେ ଶରତ ସକାଳର କାନନ ସୁଷମା ଜାଗ୍ରତ କରୁଥିଲା—ସଦ୍ୟ ଶ୍ୟାମଳ, ସମୁଜ୍ଜ୍ୱଳ, ଅବନ୍ୟସ୍ତ, ମାଧୁରୀମଣ୍ଡିତ ।



# ମାଟିର ଲୁହ

ଜମାଟ ଅନ୍ଧକାର ଭିତରେ ରାତିଟା ଭାରି ଭାରି ବୋଧ ହେଉଥିଲା । ଆକାଶର ତାରକା ଗୁଡ଼ାକ ବେଶ୍ ଉଜ୍ଜ୍ୱଳ ଓ ସହାନୁଭୂତିଶୀଳ ଜଣା ଯାଉଥିଲେ । ଖରାଦିନିଆ ତତଲା ରାତିର ଗଉଦ ଓ ଭାଜିହେଲା ଭାବକୁ ଆହୁରି ବିରକ୍ତିକର କରୁଥିଲା ଦମକାଏ ଶ୍ରାନ୍ତ ପବନର ସବିରାମ ସଞ୍ଚାର । ଶୁଖିଲା ବିଲମାଳର ଫଟାଭୁଇଁ ମାଡ଼ି ଅଣବାଟରେ ମୁଁ ଏକା ଏକା ଚାଲିଥିଲି ଗୋଟାଏ ଅଗମ୍ୟ ସ୍ଥାନ ଲକ୍ଷ୍ୟରେ । କେଉଁ ନାଲା ତଡ଼ର ନଟା ବୁଦା ଆଉ ହାଡ଼ ଉପର ଗଛ ଗୁଡ଼ାକ ରହସ୍ୟମୟ ଦେଖା ଯାଉଥିଲେ । ଅନ୍ଧକାର ଆଖି ସହା ହେଇଗଲେ ମଧ୍ୟ କୋଡ଼ିଏ ପଚାଶ ହାତ ଅନ୍ତରରେ ଅଜ୍ଞାତ ଦେଖି କୌଣସି ଜିନିଷ ବାରିବା ସମ୍ଭବ ହେଉ ନଥିଲା । ହୁଏତ, ଗୋଟାଏ ବଙ୍କୁଲିଆ ବୁଦା ମୋ ମନରେ ଭାଲୁର ଭ୍ରାନ୍ତି ଜଗାଉ ଥିଲା ଏବଂ ସତ କହିଲେ, କାଳେ କେଉଁଠି ଭାଲୁ ମୁହଁରେ ପଡ଼ିଯିବ

ପଗ୍ରି ବୋଲି ମୋର ଛାତି ଭିତରେ ବରାବର ଦକା ଲାଗି ରହୁଥିଲା । ସଡ଼କ ଉପରେ କମ୍ବା ଦିନ ବେଳେ ଯାତ୍ରା କରିବାର ସୁଯୋଗ ମୋର ନଥିଲା । ମୋ ପଛରେ ପୁଲିସ ଲାଗିଥିଲେ ।

ପୁଲିସ ମୋ ପଛରେ ଲାଗିଥିଲେ ଅନେକ ମାସ ଧରି । ମୋର ମୁଣ୍ଡ ଉପରେ ପୁରସ୍କାର ଘୋଷଣା ବି ହୋଇଥିଲା । ମୃତ ଅବା ଜୀବନ୍ତ ଅବସ୍ଥାରେ ମତେ ପାଇବା ଲାଗି ସରକାର ବଡ଼ ଆତୁର ହୋଇ ପଡ଼ିଥିଲେ । ମୁଁ ହତ୍ୟାକାରୀ ନୁହେଁ, ଡ଼କାୟତ ନୁହେଁ, ଧର୍ଷପାଦାଜ ମଧ୍ୟ ନୁହେଁ । ତଥାପି ମୋ ନାଁ ପଡ଼ିଲେ ସରକାର ପ୍ରମାଦ ଗଣୁ-ଥିଲେ । ମତେ ସ୍ୱାଧୀନ ଭାବେ ଛାଡ଼ି ଦେଲେ ସହଜରେ ନିଶ୍ୱାସ ମାରି ପାରିବେନି ବୋଲି ସରକାର ବିକଳ ହେଉଥିଲେ । ଗୋଟାଏ ଆଶ୍ରୟ ସ୍ଥାନରୁ ଅନ୍ୟ ଗୋଟାକୁ, ଗୋଟାଏ ଗାଁରୁ ଆଉ ଏକ ଗାଁକୁ ପୁଲିସ ମତେ ଖେଦି ଯାଉଥିଲେ । କେଉଁ ଗାଁ ଲୋକେ ଯଦି ମୋର ଖବର କିଛି ନଦେଲେ (ଅନେକ ସମୟରେ ସେମାନେ ଜାଣି ନଥାନ୍ତି ମଧ୍ୟ, କାରଣ କୌଣସି ଗାଁରେ ମୁଁ କାହା ଘରେ ରହିବା କଥା ଗାଁରେ ସମସ୍ତେ ଜାଣନ୍ତେ କିପରି ?) ଖିଆଲ ଅନୁସାରେ ସେମାନଙ୍କ ଉପରେ ଚାଲୁଥିଲା ଅତ୍ୟାଚାର । ଧରିନେଇ କାହାକୁ ଅଟକବନ୍ଦୀ କରୁଥିଲେ, ଅପରାଧ ନବୁଝି କାହାକୁ କଠିନ ଦଣ୍ଡ ମଧ୍ୟ ଦେଉ-ଥିଲେ । ପୁଲିସ ନାଁ ଶୁଣିଲେ ମାଇପିଏ ପୋଷଙ୍କୁ ପିବାଲାଗି ଭୟ କରୁଥିଲେ । ସତ ମିଛ ମିଶି ନାନା ପ୍ରକାର ଅତ୍ୟାଚାରର ଗୁଜବ ଉଠୁଥିଲା ପୁଲିସ ଉପରେ । ମୋର ବଡ଼ ଅପରାଧ ଯେ ସମାଜର ଅବହେଳିତ ତଳିଆ ଲୋକଙ୍କ କଥା ମୁଁ କହୁଥିଲି, ସେମାନଙ୍କ ପାଇଁ ଲଢୁଥିଲି । ମୁଁ ଥିଲି କମ୍ୟୁନିଷ୍ଟ ପାର୍ଟିର ସଭ୍ୟ । ପାର୍ଟି ବେଆଇନ ଘୋଷିତ ହୋଇଥିଲା । ମୁଁ ଅଜ୍ଞାତ ବାସ କରୁଥିଲି ।

ତାକରଡ଼ା ରକ୍ତପାତ ପରେ ଆଖପାଖର ପ୍ରାୟ ଗୃହାଗ ଖଣ୍ଡ ଗାଁ ଉପରେ ପ୍ରତାପୀ ପୁଲିସର ଅନ୍ଧାରୁଆ ଶଙ୍କୁଡ଼ ଗ୍ରହଣ ଥିଲା । ଗାଁ ଗାଁ ଭିତରେ ପଶି ପୁଲିସ ପଇଁତରା ମାରୁଥାନ୍ତି । ସାନ୍ଧ୍ୟ ଆଇନ, ସାମରିକ ଆଇନ, ସମୂହ ଜୋରିମାନା, ମଣିଷ ଅଖିରେ ପଡ଼ିଲେ ଗୁଳି ଚଳାଇବାର ହୁକୁମ—ସବୁ ମିଶି ଜୀବନ ଯାତ୍ରାକୁ ଏକ ନିଶ୍ଚିତ ଅନିଶ୍ଚିତରେ ପରିଣତ କରିଥିଲା । ପୁଲିସ୍ ବୁଟ୍‌ର ମଚ ମଚ ଶବ୍ଦରେ ଗଛର ପତ୍ର ଝଡ଼ି ପଡୁଥିଲା; ପାଦ ତଳର ମାଟି ଥରି ଯାଉଥିଲା । କୋରଡ଼ା ଆଉ ବାୟୋନେଟ ଆଘାତରେ ନିର୍ବାହ ଗାଉଁଲି ଲୋକେ ଆତଙ୍କରେ କିଏ କେଉଁଆଡ଼େ ପଳାଇ ଯାଉଥିଲେ । ଗାଁ ଗହଳରେ କୋକୁଆ ଭୟ ମାଡିଗଲା । ଗୁହାଳ ପିଣ୍ଡା ଗାଈ ଗୋରୁ ଗୁଡ଼ାକ ଅଶାନ୍ତ ଭାବେ ବିଲ ମାଳରେ ବୁଲୁଥିଲେ । ଗୋଟାଏ ଗାଁର ଗାଈ ଯାଇ ଆଉ ଗୋଟାଏ ଗାଁର ଗୋଠରେ ମିଶୁଥିଲା । ପଞ୍ଝା ପଞ୍ଝା ପୁଲିସ ସ୍ଥାନେ ସ୍ଥାନେ ତମ୍ବୁ ପାତି ରହିଥିଲେ । ଲୋକଙ୍କ ମନରେ ଭୟ ଉପୁଜାଇବା ପାଇଁ ସେମାନେ, ଯେବେ ମନ ପାଉଥିଲା, ନିର୍ଲକ୍ଷ୍ୟ ଭାବରେ ଗୁଳି ଫୁଟାଉ ଥିଲେ । ଗୁଳି ଆବାଜ କାନରେ ପଡ଼ିବା ମାତ୍ରେ ବିଲମାଳର ଶହ ଶହ ଗାଈ ଗୋରୁ ଏକା ସମୟରେ କାତର ହମ୍ବାଳି ଛାଡୁଥିଲେ ।

ପ୍ରତିଦିନ ଖେଦ ଖେଦ ପୁଲିସମାନେ କମ୍ୟୁନିଷ୍ଟ ଧରୁଥିଲେ । କିଏ କମ୍ୟୁନିଷ୍ଟ କିଏ ନୁହେ ସେ ବିଚାର ସେମାନଙ୍କର ନଥିଲା । ପୁଲିସ ଖିଆଲର ଯିଏ ବଶ ନହେଲା ତା' ନାଁ ହେଲା କମ୍ୟୁନିଷ୍ଟ । ଯେଉଁ କେତେଜଣ ପ୍ରତିଶୋଧପରାୟଣ ପୁଲିସର ଶାଗୁଣା ଦୃଷ୍ଟି ଏଡ଼ାଇ ଲୁଚି ପାରିଥିଲେ ସେମାନଙ୍କ ଭିତରେ ମୁଁ ଥିଲି ଜଣେ । ଆମେ ବିକ୍ଷିପ୍ତ ହୋଇ ରହୁଥିଲୁ । ରାତିରେ କୌଣସି ଏକ ନିର୍ଦ୍ଦିଷ୍ଟ

ସ୍ଥାନରେ ମିଳିତ ହୋଇ କର୍ମପନ୍ଥା ନିର୍ଣ୍ଣୟ କରୁଥିଲି । ସଂପର୍କ ସ୍ଥାପକ, ସମ୍ବାଦ ବାହକ, ପଥ ପ୍ରଦର୍ଶକ, ସମସ୍ତେ ସବୁ ସମୟରେ ସତର୍କ ରହୁଥିଲେ ।

ଦିନେ ହଠାତ୍ ମୁଁ ରହୁଥିବା ଗାଁ ପାଖରୁ ପ୍ରାୟ ପାଞ୍ଚ ମାଇଲ୍ ଦୂରରେ ଅଛି ଗୋଟାଏ ଗାଁ ଘେରାଉ କରି ଆମ ଭିତରୁ ଦୁଇ ଜଣଙ୍କୁ ପୁଲିସ ଧରି ନେଲେ । ଜଣେ ଅନଭିଜ୍ଞ ସଂପର୍କ ସ୍ଥାପକଙ୍କୁ ଲୋଭ ଦେଖାଇ ପୁଲିସ ହାତ କରି ନେଇଥିଲା । ମୁଁ ଜାଣିଲି, ଏଥର ମୋର ପାଳି । ସେଇ ଗାଁରେ ସେ ଦୁଇଜଣଙ୍କୁ ପାଇ ନଥିଲେ ପୁଲିସ ଏ ଗାଁକୁ ନିଶ୍ଚୟ ଆସିଥାନ୍ତା ଆଉ ମୋର ନିସ୍ତାର ନଥିଲା । ଦିନ ଦି'ପହରେ ମୁଁ କେଉଁଠି ଲୁଚି ରହନ୍ତି ? ସେମାନଙ୍କୁ ପାଇ ପୁଲିସ ଛାଡି ଦେଲେ ମୋତେ; ପୁଲିସ ଗାଡ଼ି ଗଲା ସହର ଅଭିମୁଖେ । ବେଳ ଢଳିଲା ବେଳକୁ ମୁଁ ଖବର ପାଇ ସାରିଥାଏ । ବାକଲରେ କେବଳ ରାତିର ପ୍ରତୀକ୍ଷା କରୁଥାଏ । ଗାଁ ନିଶବଦ ହେଲାରୁ ମୁଁ ଆଶ୍ରୟ ଛାଡ଼ିଲି । ହଠାତ୍ ଯେପରି ପୁଲିସ ନଜର ନ ପଡ଼ିବ ସେପରି ଏକ ଦୂର ଆଶ୍ରୟ ସ୍ଥାନରେ ରାତାରାତି ପହୁଞ୍ଚିବା ପାଇଁ ମୁଁ ଉର୍ଦ୍ଧ୍ୱଶ୍ୱାସରେ ପଳାଇ ଯାଉଥିଲି । ରାସ୍ତାର ହିସାବ ପ୍ରତି ମୋର ଭାବନା ନଥିଲା । ସମୟ ହିଁ ଥିଲା ମୋ ପକ୍ଷରେ ସବୁଠୁଁ ମୂଲ୍ୟବାନ । ପ୍ରତ୍ୟେକ ମିନିଟ ଥିଲା ମୋର ଜୀବନ ମରଣ ସମସ୍ୟା ସଙ୍ଗେ ଜଡ଼ିତ । କମ୍ରେଡ଼ ମଦନ ଛଡ଼ା ଅନ୍ୟ ସମସ୍ତଙ୍କ ସଙ୍ଗେ ମୋର ଯୋଗସୂତ୍ର କଟି ଗଲା । ଜୀବନ ବାକଲରେ ମୁଁ ପଳାଇ ଯାଉଥିଲି । ଧରାହେଲେ ଫାଶି ପାଇବା କିମ୍ବା ଆଜୀବନ କାରାଗୃହରେ ନିକ୍ଷିପ୍ତ ହେବା ମୋ ପାଇଁ ଆଗରୁ ନିଷ୍ପତ୍ତି ହୋଇ ରହିଥିଲା । ପରେ ଅବଶ୍ୟ ମୁଁ ମୋର ଜଣେ ବିଶ୍ବସ୍ତ ତଥା ହିତାକାଂକ୍ଷୀ ଉଚ୍ଚ

ପାହୁଆ ପୁଲିସ ଅଫିସରଙ୍କ ପାଖରୁ ଶୁଣିବାକୁ ପାଇଥିଲି ଯେ ମୋର ଅଜ୍ଞାତ ବାସ ବେଳେ ପାଣି ଆଖରେ ଲୋକ କେହି ନଥିଲେ କମ୍ବା ରାତରେ ଦେଖିବାକୁ ପାଇଲେ, ମରିବା ଭଳି ମୋ ଉପରକୁ ଗୁଳି ଚଳାଇବାକୁ ଭିତର ନିର୍ଦ୍ଦେଶ ଥିଲା । ସୁତରାଂ ମୁଁ କେଉଁଠି ରହିଥିବାର କିଛି ସୂଚନା ମିଳିଲେ ପୁଲିସ ପାର୍ଟି ଗଲାବେଳେ ମୋର ସେଇ ହିତୈଷୀ ଅଫିସର ଜଣକ ସେଇ ପାର୍ଟିରେ ଯିବା ଲାଗି ସବୁ ପ୍ରକାର ଉଦ୍ୟମ କରୁଥିଲେ ଏବଂ ଅଧିକାଂଶ ଅବସରରେ ଯାଇ ପାରିଥିଲେ । ମୋର ସରଳ ତଥା ସ୍ୱାଭାବିକ ବିଦ୍ରୋହୀ ଜୀବନକୁ କୁଟୀଳ ରାଜନୈତିକ ଚକ୍ରାନ୍ତ ଆଚ୍ଛନ୍ନ କରି ରଖୁଥିଲା ।

ରାତ୍ରିର ନିସ୍ତବ୍ଧତା ଦୁର୍ବହ ବୋଧ ହେଉଥିଲା । ଚିରଦିନ ପାଇଁ ହଜିଯିବା ଓ ଲୁଚିଯିବାର ଏକ ବିଚିତ୍ର ଅନୁଭୂତି ମୋର ଆତ୍ମା ଭିତରକୁ ମାଡ଼ି ଯାଉଥିଲା । ସେଇ ଥଣ୍ଡା ରାତରେ ମୋର ଖାଲୁଆ ଦେହରେ ଶୀତକଣ୍ଟା ମାରି ଯାଉଥିଲା । ସବୁପ୍ରକାର ଚିନ୍ତାର ଖିଅ ଆଲୁବାଲୁ ହୋଇ ଯାଉଥିଲା । ତଥାପି ମୁଁ ଗୁଳିଥିଲି, ବଞ୍ଚି ରହିବାର ଲୋଭ ମତେ କାବୁ କରି ସାରିଥିଲା ।

( ୨ )

ଶେଷ ରାତ୍ରିର ଅନ୍ଧକାର ନିବିଡ଼ତର ହେଲାବେଳେ ଯେଉଁ ଗାଁରେ ଆଜି ଯାହା ଘରେ ଯାଇ ମୁଁ କବାଟରେ ହାତ ମାରିଲି, ସେ ପରିବାର ମୋର ପୂର୍ବରୁ ପରିଚିତ । ଏଥିପୂର୍ବରୁ ଥରେ ମୁଁ ସେଇ ଘରେ ଆତ୍ମଗୋପନ କରିଥିଲି । ଗୃହସ୍ୱାମୀ ସେତେବେଳେ ଅବିବାହିତ ଥିଲେ । ଘରେ ମାଆ ବୁଢ଼ୀ ଛଡ଼ା ଦ୍ୱିତୀୟ ବ୍ୟକ୍ତି କେହି ନଥିଲେ । ବର୍ତ୍ତମାନ ସେ ବିବାହିତ ଓ ଗୋଟିଏ ସନ୍ତାନର

ପିତା । ଗାଁ ପାଖର ଗୋଟିଏ ମଧ୍ୟ ଇଂରେଜୀ ବିଦ୍ୟାଳୟରେ ଶିକ୍ଷକତା କରନ୍ତି । କବାଟରେ ଦୁଇ ତିନିଥର ହାତ ମାରିବା ପରେ ସେ କବାଟ ଖୋଲିଲେ ଏବଂ ଧୂଆଁ ଭରା ନିସ୍ତେଜ ଲଣ୍ଠନଟିଏ ଉପରକୁ ଟେକି ମୋର ମୁହଁକୁ ଭଲରୂପେ ଚାହିଁଲେ । ବ୍ୟାପାର ବୁଝିବାରେ ତାଙ୍କର ବାକି ନଥିଲା । କହିଲେ, "ଭିତରକୁ ଆସନ୍ତୁ ।"

ଆମେ ଦୁହେଁ ଘର ଭିତରେ ପଶିବା ପରେ ସେ ପୁଣି କବାଟ ବନ୍ଦ କରିଦେଲେ । ବେଗ୍‌ଟିକୁ ଫିଙ୍ଗିଦେଇ ମୁଁ ଗୋଟାଏ ଚୌକୀ ଉପରେ ବସିପଡ଼ିଲି । ମୋର ଗୋଡ଼ ଦୁଇଟାରେ ଆଉ ଟିକିଏ ହେଲେ ବଳ ନଥିଲା । ଜଙ୍ଘ ଆଉ ପେଣ୍ଡାର ମାଂସପେଶୀ ଗୁଡ଼ାକ ଥରୁଥାଏ ।

ଲଣ୍ଠନଟି ନେଇ ସେ ମଝିଅଗଣାକୁ ଗଲେ । ଗୋଟାଏ ପାଣିଧାଡ଼ି ପିଣ୍ଡା କଡ଼କୁ ଢୋକଟାଏ ଆଣି ମତେ ଡାକିଲେ । ଗୋଡ଼, ହାତ, ମୁହଁ ଭଲ ରୂପେ ଧୋଇ ମୁଁ ଡାଳେ ହେବ ପାଣି ପିଇ ପକାଇଲି । ଦୁହେଁ ଆସି ପୁଣି ଘର ଭିତରେ ବସିଲୁ । ସେ ପଚାରିଲେ, 'କେଉଁଠୁ ଆସିଲେ ?'

ସତ କହିବାକୁ ମନ ବଳାଥିଲେ ମଧ୍ୟ ଅଜ୍ଞାତବାସର ନିୟମ କଗି ଗୋଟାଏ ଭୁଲ ଜାଗାର ନାଁ କହିଲି । ସେ ନୀରବ ହୋଇଗଲେ । ମୁଁ କହିଲି, 'ମଦନ ଆସିବାଯାଏଁ ମତେ ଆପଣଙ୍କ ଘରେ ଆଶ୍ରୟ ନେବାକୁ ପଡ଼ିବ । ତାପରେ ମୁଁ ଅନ୍ୟସ୍ଥାନକୁ ଚାଲିଯିବି ।'

ତାଙ୍କର ମୁହଁ ଦେଖି ବୁଝିପାରିଲି ଯେ ଗତଥର ଭଳି ତାଙ୍କର ଆଗ୍ରହ ଏଥର ନାହିଁ । ଭୟ ବଦଳରେ ସାମାନ୍ୟ ବିରକ୍ତି ମିଶା ଗୋଟାଏ କି ପ୍ରକାର ବିବ୍ରତ ଭାବ ତାଙ୍କର ନିଦ-ଫୁଲା ମୁହଁରୁ

ପ୍ରକାଶ ପାଉଥିଲା । ଅନ୍ୟ ସମୟ ହୋଇଥିଲେ ସେପରି ଅବସ୍ଥାରେ ସେଇଠି ଆଉ କ୍ଷଣେ ରହିବାକୁ ମୁଁ ଚାହାନ୍ତିନି । କିନ୍ତୁ ଅସହାୟ ପରିସ୍ଥିତିରେ ସବୁ ରକମର ବ୍ୟବହାର ବରଦାସ୍ତ କରିବାପାଇଁ ମଣିଷର ଚମଡ଼ା ଆପେ ଆପେ ବାଧୁଆ ହୋଇଯାଏ । ନାଲ୍‌ଙ୍କ ଭିତେ ଠିକଏ ନରସ ହସ ହସି ମୁଁ ଗୋଟିଏ ଛୋଟ ବକ୍ତୃତା ଆରମ୍ଭ କରିଦେଲି ।

'ମଦନ ଚଞ୍ଚଳ ଆସିଯିବ, ଆପଣ ଭାବିତ ହୁଅନ୍ତୁନି । ଆଉ ଆପଣଙ୍କ ଭଳି ପାର୍ଟିର ସମର୍ଥକ ଯଦି ଇମିତି ବେଳରେ ପଛରେ ନରହିବେ, ଆମେ ଏ ସାମାଜିକ ବ୍ୟବସ୍ଥା ପରିବର୍ତ୍ତନ କରିବୁ କିପରି ? ଲକ୍ଷ୍ମୀ ଓ ରକ୍ତର ଏ ଉତ୍ସବ ଆଉ କେତେ କାଳ ଧରି ଚାଲିବ ? ଲୋକେ ମଶା ମାଛିଠାରୁ ହୀନ ହେଲେଣି । ଜୀବନର ମୂଲ୍ୟ ବୋଲି କିଛି ଆଉ ନାହିଁ । ଲୋକପ୍ରିୟ ବୋଲାଉଥିବା ଗୋଟାଏ ସରକାର ମଣିଷର ଧନ ଏ ଜୀବନକୁ ଏପରି ତୁଚ୍ଛ ମଣିପାରେ, ଆଗରୁ କେବେହେଲେ ଶୁଣା ନଥିଲା । ଭବିଷ୍ୟତରେ ଆଉ ଶୁଣା ନଯାଉ ବୋଲି ଭାବିଲେ, ମୋ ଭଳି ଆପଣଙ୍କ ଦାୟିତ୍ୱ ମଧ୍ୟ କିଛି କମ୍ ନୁହେଁ ।

ମନେହେଲା, ମୋର ବକ୍ତୃତାରେ ସେ ପ୍ରଭାବିତ ହୋଇନାହାନ୍ତି । କିଛି ସମୟ ନୀରବ ରହି ସେ କହିଲେ,

'ହଉ, ଆପଣ ବସନ୍ତୁ, ମୁଁ ଆସୁଚି ।' ସେ ଉଠି ଚାଲିଗଲେ ଶୋଇବା ଘରକୁ । ଭାବିଲି, ସ୍ତ୍ରୀସଙ୍ଗେ ପରାମର୍ଶ ନକରି ସେ କୌଣସି ନିଷ୍ପତ୍ତିରେ ପହୁଞ୍ଚିବାକୁ ଚାହାଁ ନାହାନ୍ତି । ଘରେ ମୂଷା ଚାଲିଲେ ସତର୍କ ଗୃହିଣୀର ନିଦ ଭାଙ୍ଗି ଯାଉଥାଏ । ବାହାରର ମଣିଷଟାଏ ଘର ଭିତରେ ପଶି ଏତେ ସମୟ ରହିଲା ପରେ କ'ଣ ତାଙ୍କର

ନାହିଁ ଭାଙ୍ଗନ୍ତାନି ? ସେ ଚେଇଁଥିଲେ କାରଣ ଗୃହସ୍ୱାମୀ ଯିବାମାତ୍ରେ କାଚ ଚୁଡ଼ିଗୁଡ଼ିକର ସଙ୍ଗେ ଫୁସ୍ ଫାସ୍ କଥାର ଆବାଜ ମୋର କାନରେ ଆସି ବାଜିଲା । ଅନିଦ୍ରା ହେତୁରୁ ମୋର ଆଖି ଦୁଇଟା ପୋଡ଼ା ଜଳା କରୁଥାଏ । ଧୂଆଁ ଭର୍ତ୍ତି ଲଣ୍ଠନଟାର ବିବର୍ଣ୍ଣ ଆଲୋକ ମତେ ବଡ଼ ବିରୂପ ଭଳି ବାଧୁଥିଲା । ତଥାପି ସତୃଷ୍ଣ ଦୃଷ୍ଟିରେ ମୁଁ ଚାହିଁଥିଲି ଗୃହସ୍ୱାମୀଙ୍କ ଶୋଇବା ଘରକୁ । ମତେ ଲାଗୁଥିଲା, ସେଇଠି ସେଇ ପାହାନ୍ତି ପହରରେ ସେ ସ୍ୱାମୀ ସ୍ତ୍ରୀ ଯେପରି ମୋର ଭାଗ୍ୟ ନିଷ୍ପତ୍ତି କରୁଚନ୍ତି ।

ମଣିଷ ଜୀବନର ଅସ୍ଥିରତା କଥା ଭାବି ମୋର ଛାତିର ରକ୍ତ ଶୀତଳ ହୋଇ ଆସୁଥିଲା । ବାଘ ମୁହଁରୁ ଯାଇଁ ପଳେଇ ଗଲାବେଳେ ସାପ ବିଲରେ ଗୋଡ଼ ପଶିଗଲେ ଆଉ କି ଭରସା ! ଭାଗ୍ୟ ତେବେ ମଣିଷର ବଶ ନୁହେଁ ? ଜୀବନର ଯାତ୍ରାପଥ ଯଦି ଆଗରୁ କେଉଁ ଅଦୃଶ୍ୟ ବିଧାତା ଦ୍ୱାରା ନିର୍ଦ୍ଧାରିତ, ତେବେ ମୋର ଏ ସଂଗ୍ରାମର କି ମୂଲ୍ୟ ଅଛି ? ନିଜର ଭାଗ୍ୟକୁ ନିୟନ୍ତ୍ରଣ କରିବା ଶକ୍ତି ଯଦି ମଣିଷର ନାହିଁ ତେବେ ପୁଣି ପ୍ରକୃତିର ନିୟମକୁ ମାନିବ କିପରି ? ପୁଣି ଭାବୁଥିଲି, ହୁଏତ ଏହା ମୋର ସାମୟିକ ଦୁର୍ବଳତା । ଯେଉଁ ଦୁର୍ବଳତାର ଶୀକାର ହୋଇ ମଣିଷ ଯୁଗ ଯୁଗ ଧରି ଶ୍ରେଣୀ ପାର୍ଥକ୍ୟକୁ ସହଜ ଓ ସ୍ୱାଭାବିକ ବୋଲି ସ୍ୱୀକାର କରି ଆସିଛି । ଦେଖନ୍ତୁ, ଭାଗ୍ୟ ଯଦି ମଣିଷର କେବଳ ନିୟାମକ, ତାହାହେଲେ ବାଘ ମୁହଁରୁ ଫିଟି ସାପବିଲରେ ଗୋଡ଼ ଭର୍ତ୍ତି କରିବାକୁ ମୋର ବାଧ୍ୟ ନିର୍ବନ୍ଧ । ଏଥିରେ ଅସନ୍ତୁଷ୍ଟ ବା ବ୍ୟଥିତ ହେବାର କିଛି କାରଣ ନାହିଁ । ବିଲରେ ଗୋଡ଼ ଭର୍ତ୍ତି ହୋଇଗଲା ବୋଲି ଶୋଚନା କାହିଁକି ? ସବୁ ସମୟରେ ସାପର ଆଉ ବିଲରେ ଶୋଇ ରହେନି ।

ମୋ ଭଳି ମେ ମଧ୍ୟ ସ୍ୱଳିତର । ଘରର ଆଶ୍ରୟ ରାତ ସମସ୍ତଙ୍କ ପାଇଁ ଆମ ଦୁହିଁଙ୍କୁ ମଜା । ବନ୍ଧୁତା ହେବାର ଅବକାଶ ଯଦି କେବେ ଥାଏ, ତାହା ହେବ ବାହାରେ । ମଣିଷର ବୃଦ୍ଧି ଅପେକ୍ଷା ସାପର ବିଷ କଣ ବେଶୀ ମାରାତ୍ମକ ! ମନକୁ ନାନାପ୍ରକାର ପ୍ରବୋଧ ଦେଇ ମୁଁ ବିକଳ ଆଖିରେ ଚାହିଁଥାଏ ସେଇ ଶୋଇବା ଘରକୁ । ସେ ଭିତରୁ ଆସୁଥିବା ଫୁସ୍‌ଫାସ୍ ଆଓ୍ୱାଜ ମତେ ଲାଗୁଥାଏ ବିଳ ଭିତରେ ଆହତ ସାପର କ୍ଷିପ୍ର ଫୁଁ ଫୁଁ ଭଳି । ବିନା ଦଂଶନରେ ମୁଁ ବିଷର ଜ୍ୱାଳା ସର୍ବାଙ୍ଗରେ ଅନୁଭବ କରୁଥିଲି ।

ଗୃହସ୍ୱାମୀ ମୋ ପାଖକୁ ଆସିଲା ବେଳକୁ ମୁଁ ଚୌକିଟି ଉପରେ ଢୁଳେଇ ପଡ଼ିଥାଏ । ହଲାଇ ଦେଇ ମତେ ସେ ଚେତା କରି ଦେଲେ ଏବଂ କହିଲେ, 'ବେଗ୍‌ଟି ଧରି ଆସନ୍ତୁ ।'

କୁକୁଡ଼ା ଡାକିଲେଣି । ରାତିପାହି ଆସୁଥାଏ । ମୁଁ ବେଗ୍‌ଟି ଉଠେଇଲି । ଗୋଟିଏ ମସିଣା ଓ ମୁଚୁଳାଟିଏ ଧରି ସେ ମତେ ଗୋଟାଏ ଛୋଟ ଗମ୍ଭିରାକୁ ବାଟ କଢ଼ାଇ ନେଲେ । ମସିଣା ଆଉ ମୁତୁଳାଟି ଯଥାବିଧି ପାରିଦେଇ କହିଲେ, "ଆପଣ ବର୍ତ୍ତମାନ ଶୋଇ ପଡ଼ନ୍ତୁ । ମୁଁ ଆଜି ସ୍କୁଲ ଯାଉନି । ଆପଣ ଉଠିଲେ ଖାଦ୍ୟ ଆଣିଦେବି । କିନ୍ତୁ ଆଜି ରାତି ଆପଣଙ୍କୁ ଏଠୁ ଚାଲିଯିବାକୁ ପଡ଼ିବ । ମୋ ସ୍ତ୍ରୀ ବଡ଼ ଆପତ୍ତି କରୁଛନ୍ତି ।"

ରାତି ହେବାପାଇଁ ଆହୁରି ବାର ଘଣ୍ଟା ସମୟ ବାକି । ମୁଁ ଚିନ୍ତିତ ହେବାର କିଛି କାରଣ ନଥିଲା । ମସିଣାରେ ପଡ଼ୁ ପଡ଼ୁ ନିଦ ଲାଗିଗଲା । ଏକା କଡ଼ରେ କେତେ ଘଣ୍ଟା ଶୋଇ ଯିବା ପରେ ଝାଳ, ଚୁଳୁବୁଳିରେ ନିଦ ଭାଙ୍ଗୁଥାଏ, ପୁଣି ଘାଣ୍ଟୁଥାଏ । ମୁଁ ଉଠିଲା

ବେଳକୁ ବେଳ ଡଳି ଗଲଣି । ଖାଇଦେଇ ପୁଣି ରାତିର ପ୍ରତୀକ୍ଷା ! କାଲୁ ମୁହାଁ ସଞ୍ଜବେଳକୁ ମଦନ ଆସିବା ଖବର ପାଇ ମୋର ସବୁ ଅବସାଦ ଦୂର ହୋଇଗଲା । ରାତି ସାଢ଼େ ଆଠଟାବେଳେ ସେଇ ଆଶ୍ରୟ ଗାଢ଼ ଅନ୍ଧକାର ଭିତରେ ମିଶିଗଲୁ ଆମେ ଦୁହେଁ ।

( ୩ )

ରେବତୀ ଘରେ ପ୍ରଥମ ମାସକ ବଡ଼ ଅଡୁଆ ଅଡୁଆ ବୋଧକଲି । ମୋ ସଙ୍ଗେ ସହଜ ହେବା ଲାଗି ସେ ଯେତେ ଯତ୍ନ କଲେ ମଧ୍ୟ ମୁଁ ବରାବର ଛଡ଼ା ଛଡ଼ାରେ ରହିବାକୁ ଚେଷ୍ଟା କରୁଥିଲି । ପ୍ରୟୋଜନ ବିନା ଅନ୍ୟ ପଦେ କଥା ମୋ ମୁହଁରୁ ଫିଟୁନଥିଲା । ମୋର ପରିଚର୍ଯ୍ୟାରେ ତାର କୌଣସି ତ୍ରୁଟି ଦେଖୁନଥିଲି । ସେ ଘରେ ମୁଁ ଥିଲି ଏକମାତ୍ର ପୁରୁଷବ୍ୟକ୍ତି । ରେବତୀର ଦୁଇଟି ଝିଅ । ବଡ଼ଟିର ବୟସ ସାତବର୍ଷ ଆଉ ସାନଟି ଚାରି ବର୍ଷର । ଦୁଇବର୍ଷ ତଳେ ସ୍ୱାମୀ ଇହଲୀଳା ଶେଷ କରିଛି । ଶାଶୁବୁଢ଼ୀ ଅନ୍ଧୁଣୀ । ଆର୍ଥିକ ଅବସ୍ଥା ଏକରକମ ସ୍ୱଚ୍ଛଳ ଜଣାଯାଉଥିଲା । ଖୁବ୍ ବଡ଼ ଧରଣର ଘର, ବହୁତ ବଖରା, ଚାରିଆଡ଼େ ପାଚେରୀ ଘେରା । ସୁତରାଂ ମୋର ରହିବାରେ କିଛି ଅସୁବିଧା ନଥିଲା । ଘରର ଚାକର ଚାକରାଣୀଙ୍କୁ ସେ ମୋର କି ପରିଚୟ ଦେଇଥିଲା ମୁଁ ଜାଣେନା ! ତେବେ, ମତେ ହଠାତ୍ ଦେଖିଲେ କେହି କିଛି କହିନ୍ତିନା, ମୁଁ ବି କାହାକୁ କିଛି କହେନା । ମତେ ଏଠି ଛାଡ଼ି ଗଲାବେଳେ ମଦନ କହିଥିଲା, 'ଏଇଟି ତୋର ଶେଷ ଆଶ୍ରୟ । ଏଠୁ ହୁଏତ ଧରା ହୋଇ ଯିବୁ କିମ୍ବା ପାର୍ଟି ଉପରୁ କଟକଣା ଉଠିଗଲେ ମୁକ୍ତ ପାଇବୁ । ଅନ୍ୟମାନଙ୍କ ସଙ୍ଗେ ମୋର ବି ଯୋଗସୂତ୍ର କଟିଗଲାଣି । ଏଣିକି ତୋର ମୋର ସମ୍ପର୍କ ରହିଲେ ବି ଉଭୟେ ବିପନ୍ନ ହେବା । ପୁଲିସ

ମୋର ଘୋଡ଼ଣ୍ଟି ଧରିଲେଣି । ରେବତୀ ତୋର ସମସ୍ତ ଯତ୍ନନେବ, କିଛି ଚିନ୍ତାନାହିଁ । ବଞ୍ଚିଥିଲେ ପୁଣି ଭଲ ଦାନରେ ଦେଖା ।'

ରେବତୀର ଜାତି କଣ, ତାର ଆତ୍ମୀୟ ସ୍ୱଜନ କିଏ, ମଦନର ସେ କଣ ହୁଏ ମୁଁ କିଛି ଜାଣିବାର ଉପାୟ ନଥିଲା । କେବଳ ବୟସ ତାର ତିରିଶରୁ ବେଶି ହେବନି ବୋଲି ମୁଁ ଅନୁମାନ କରୁଥିଲି । ସେଥିଲାଗି ମୁଁ ସଂକୋଚ କରୁଥିଲି ତା ଆଗରେ ସହଜ ଭାବେ ଆଳାପ କରିବା ପାଇଁ । ବଡ଼ ଝିଅଟି ମୋ ପାଖକୁ କେବେ ଆସେନା । ଛୁଣୁ (ସାନ)ଟି ପ୍ରାୟ ଥାଏ ପାଖେ ପାଖେ । କେତେବେଳେ ବଜାର ବଜାର ହୁଏ, କେବେ ବା କିଛି ଗୋଟାଏ ଖେଳନା ଧରି ମନକୁ ମନ ଖେଳି ବସେ । ପଢ଼ିବା ପାଇଁ ମୋର ପାଖରେ କିଛି ବହି ନଥିଲା । ରେବତୀର ରାମାୟଣ, ମହାଭାରତ, ନୃସିଂହ ପୁରାଣ, ଦାର୍ଢ୍ୟତାଭକ୍ତି, ରସକଲ୍ଲୋଳ, ଭାଗବତ, ମଥୁରାମଙ୍ଗଳ, ବୈଦେହୀଶ ବିଳାସ, ଲାବଣ୍ୟବତୀ, କବିସୂର୍ଯ୍ୟ ଗ୍ରନ୍ଥାବଳୀ, କେଶବ କୋଇଲି ଆଦି ଆଣି ଗୋଟିଏ ଛୋଟ ପାଠାଗାର ତିଆରି କଲି । ସତ କହିଲେ, ସେଇ ଅଜ୍ଞାତ ବାସ ବେଳେ କେବଳ ମୁଁ ପ୍ରାଚୀନ ସାହିତ୍ୟ ପଢ଼ିବାର ପ୍ରଶସ୍ତ ଅବକାଶ ପାଇଥିଲି ।

ତନ୍ଦ୍ରାବନ ହେଲା ଖୁବ୍ ଝଡ଼ ଧରିଚି । ଦିନେ ରାତିରେ ଘରର ସବୁ କାମଦାମ ସାରି ରେବତୀ ମୋର ବଖରାକୁ ଆସିଲା । ମୁଁ ଖଟ ଉପରେ ଗଡ଼ୁଥିଲି, ଓଠିବାର ବର୍ଷ ପଡ଼ିଲା । ଏଣୁଣି ବନ୍ଧକୁ ଲାଗି ସେ ବସିଲା ।' ଉଜ୍ଜ୍ୱଳଭାବେ ଲଣ୍ଠନଟି ଜଳୁଥାଏ । ବାହାରେ ବର୍ଷା ଅଜାଡ଼ ପଡୁଚି । ମୋର ମୁହଁକୁ ଅନେଇ ପଚାରିଲା,

"ତମର କିଛି ଅସୁବିଧା ହେଉଚି କି ଏଠି ?"

"ନାଁ, ତ", ସନ୍ଦିଗ୍ଧ ଭାବେ ଉତ୍ତର କଲି ।"

"ତମେ ସବୁବେଳେ ଇମିତି ନୀରବ ରହୁଚ କାହିଁକି ?"

ମୁଁ ନୀରବ ରହିଲି । କଣ କହନ୍ତି ? ସେ ପୁଣି ଆରମ୍ଭ କଲା,

"ଅବଶ୍ୟ ତମେ ନୀରବ ରହିବା ବାହାରକୁ ଏକ ରକମ ଭଲ ହୋଇଚ । ତମେ ମୋର ମାମୁଁ ପୁଅ ଭାଇ ଆଉ 'ଜ୍ଞାନ ବାଇ' ହେବା ହେତୁରୁ ମୁକ୍ତ ହୋଇଯାଇଚ ବୋଲି କିଏ ପଚାରିଲେ ମୁଁ କହି ଦେଉଚି ।"

ଏତେବେଳେ ବୁଝି ପାରିଲି, ଘରର ଗୃହକର ଗୃହକତ୍ରୀ ମତେ ଦେଖିଲେ କିଛି କହନ୍ତିନି କାହିଁକି ଏବଂ ମୁଁ ସେମାନଙ୍କ କିଛି ନକହିବା ମଧ୍ୟ ମୋ ପକ୍ଷରେ ହିତକର ହୋଇଚି । ମନେ ମନେ ରେବତୀର ବୁଦ୍ଧିକୁ ପ୍ରଶଂସା ନକରି ରହି ପାରିଲିନି । ରେବତୀ କହି ଚାଲିଛି,

"ବାହାର ପାଇଁ ଯିନା ତମେ ଜ୍ଞାନବାଇ, ଘରେ ମୋ ତୁଲେ କଥା ହେବା ପାଇଁ କଣ ତୁମର ମୁହଁ ଫିଟୁନି । ଘରେ ତ ଅନ୍ଧୁଣୀ ଜଣେ ଥିଲେ, ସେଥିରେ ଆସି କଡ଼ା ଜଣେ ମିଶିଲେ; ମୁଁ କାଲୁଣୀ ହୋଇଗଲେ ସବୁ ଜଞ୍ଜାଳ ତୁଟି ଯାଆନ୍ତା ।" ରେବତୀର କଥାରେ ତ୍ରାସ ଅନୁଭବ କରୁଥିଲି । କହିଲି,

"ତମେ ମୋର ଯାହା ଯତ୍ନ ନେଉଚ, ନିଜର ମାଆ ଭଉଣୀ ମଧ୍ୟ କରନ୍ତେନି । ମୁଁ ତୁମ ପାଖରେ ବଡ଼ କୃତଜ୍ଞ ।"

"ମୋ ଭଳି ହୀନମାନ ଭଉଣୀଟି ପ୍ରତି ତମର ଆଦର ବଳୁନି ?' ରେବତୀର ସ୍ୱରରେ ଅଭିମାନ ଜମି ରହିଥିଲି" । ପିଲ ଦିନରୁ ମୁଁ ବାପା ମା ଛେଉଣ୍ଡ । ମାମୁଘରର ବଡ଼ଲୋକ, ମତେ କାହିଁକି ପଚାରନ୍ତେ ? ପୋଷିପାଳି ପିଉସୀ ମଣିଷ କଲା । ମଦନ ଭାଇ ମୋର

ମିଶ୍ରଣର ଜାଆର ପୁଅ ।" ବୁଝିପାରିଲି, ରେବତୀ କରଣଘର ଝିଅ । ନିଜ ମନର ବାସ୍ତବତାକୁ ଘୁଞ୍ଚାଇବାଲାଗି ତାକୁ ସାନ୍ତ୍ୱନା ଦେଇ କହିଲି,

'ମାମୁଁଘର କଥା ପାଶୋରି ଯା' ରେବତୀ । ତମର ଏ ମାମୁଁପୁଅ ଭାଇଟି କାହୁଁ ତୁମକୁ ପର କରି ଦେବନି ।'

ପରଦିନ ଠାରୁ ମୁଁ ରେବତୀ ପାଖରେ ସହଜ ହୋଇଗଲି । ଘରର କାମ ଦାମ ସରିଲେ ଦିପହର ବେଳେ କିମ୍ବା ରାତିରେ ମୁଁ ତାକୁ ପୁରାଣ ପଢ଼ି ଶୁଣାଏ । ବୈଦେହୀଶ ବିଳାସ ଅର୍ଥ କରି ବୁଝାଏ । ବିଭିନ୍ନ ଦେଶର ପୁରାଣ ଓ ଇତିହାସର ଉପାଖ୍ୟାନ ମାନ କହେ । ଆଧୁନିକ ଭାରତର ସାମାଜିକ ବ୍ୟବସ୍ଥା ଓ ରାଜନୈତିକ ପରିସ୍ଥିତି ଆଲୋଚନା କରେ । ଥରେ ସେ ପଚାରିଲା, "ଭାଇ, ତମେ କହୁଚ ସଶସ୍ତ୍ର ବିପ୍ଳବ କରି ଦେଶରେ ସାମ୍ୟବାଦର ପୁନାଦ ପକେଇବ । ମୋର କାହିଁକି ଆଶଙ୍କା ହେଉଚି, ଆମ ଲୋକେ ଏସବୁ ମରାମରି ହଣାହଣି କଥାକୁ ପାରିବେନି । ପର ଧନକୁ ଆଖି କରିବା ପାପ ବୋଲି ଏବେ ଯିମିତି ଲୋକେ ବୁଝିଛନ୍ତି, ଧନ ଉପରେ ଧନ ଜମେଇବା ପାପ ବୋଲି ଯଦି ଲୋକେ ବୁଝିଯିବେ ଆଉ ଏ ହଣାମରା ତ ଦରକାର ହେବନି । ବୁଦ୍ଧ କିମ୍ବା ଚୈତନ୍ୟ ତ ହଣାମରା କରିନଥିଲେ । ତା' ନହେଲେ ଆଇନ କରିଦିଅ, କିଏ ଉଁ ଚୁଁ କରିବେନି ।"

ମୋର ମନର କ୍ଷତଟି ଯେଉଁଠି ରେବତୀ ଠିକ୍ ତାରି ଉପରେ ସ୍ପର୍ଶ ଦେଇଥିଲା । ବେଦନାରେ ମୁଁ ବୁଝୁଥିଲି ଯେ ସଂସ୍କୃତି ଲୋପ ପାଇଗଲେ ସଂସ୍କାରର କିଛି ଅର୍ଥ ରହେନି । ଚେତନା ହଜିଗଲେ ଉନ୍ମାଦନାର ସାର୍ଥକତା ରହେନି । ସବୁ ଦେଶର ଇତିହାସ ଓ

ସଂସ୍କୃତ ସମାନ ନୁହେଁ । ରେବତୀ ଭିତରୁ ମୁଁ ପାଉଥିଲି ମାଟିର ଗନ୍ଧ; ମାଟିର ସ୍ପର୍ଶ । ଯେଉଁ ମାଟି ପ୍ରେମ ଓ ପ୍ରାଣରେ ଚିର କାଳ ଉର୍ବର । ଏ ମାଟି ବିଦ୍ରୂପ କିଛି ଗ୍ରହଣ କରେନି । ନବ ଜନ୍ମ ଦେଇ ମାଆ ଭଳି ସମସ୍ତଙ୍କୁ ଯତ୍ନ ଓ ଆଦର ସହକାରେ ବିକଶିତ କରେଚି । ଦିନେ କେବେ ତାର ବାତ୍ସଲ୍ୟରେ ଗ୍ଳାନି ଲାଗିନି । ତାର ମାତୃତ୍ୱର ଜୟ ହେଉ !

ଏତେ ଯତ୍ନ ଓ ଆଦର କରି ମଧ୍ୟ ରେବତୀ ତାର ଜୀବନବାଇ ଭାଇଟିକୁ ବେଶି ଦିନ ପାଖରେ ରଖି ପାରିଲାନି । ଛୋଟ ଗାଁ ଚୋଟାକରେ ବାହାରୁ ଜଣେ ଲୋକ ଆସି ମାସ ମାସ ଧରି ଘର ଭିତରେ ରହିଲେ ଲୋକେ ଭ୍ରୂକୁଞ୍ଚିତ ହେବା ସ୍ୱାଭାବିକ । ଶିକାରୀ କୁକୁର ଭଳି ପୁଲିସ ମଧ୍ୟ ବାସନା ବାରି ବୁଲୁଥାନ୍ତି । ଦିନେ ଖବର ନପାଉଣୁ ପୁଲିସ ଆସି ହାଜର । ମୋର ଖସି ଯିବାର ଅବକାଶ ନଥିଲା । ସେ ସଂପର୍କରେ ଭାବିବାକୁ ମଧ୍ୟ ମୋର ହାତରେ ସମୟ ନଥିଲା । ରେବତୀ ବିସ୍ମିତ ହେଲାନି କାରଣ ଦିନେ ମତେ ହୁଏତ ଏପରି ଭାବେ ବିଦାୟ ଦେବାକୁ ପଡ଼ିବ ବୋଲି ସେ ଆଗରୁ ଆଶଂକା କରି ପାରିଥିଲା । ହୁଏତ ଶୋଇଥିଲା । ଚେତାଥିଲେ ସେ ଯାହା ଟିକିଏ ଜଞ୍ଜାଳ କରିଥାନ୍ତା । ମୁଁ ମୋର ବେଗଟି ପ୍ରସ୍ତୁତ କଲାବେଳକୁ ରେବତୀ ମତେ ଚାହିଁ ରହିଥିଲା । ଗାଲ ଦେଇ ଧାର ଧାର ଲୁହ ଗଡ଼ି ଯାଉଥାଏ । ଦାରୋଗା ଜଣେ ପିସ୍ତଲଟିକୁ ମୋର ଛାତି ସଳଖରେ ଧରି ମୋର ପ୍ରତ୍ୟେକ ଗତି ସଙ୍ଗେ ଛଳ-ଛଳେଇ ପରି ଖେଳୁଥିବ କାଇଦାରେ ଘୂରୁଥାଏ । ବ୍ୟଙ୍ଗ କରି କହିଲା, "ଲକ୍ଷ୍ୟ ଠିକ୍ ଥିଲେ ଏତେ ଚଞ୍ଚଳତା ଅନାବଶ୍ୟକ ।"

ଘରେ ବାହାରେ ପୁଲିସ ସାଲ୍ଲ ବାଲ୍ଲ ହେଉଥାନ୍ତି । ଯିବାବେଳେ ରେବତୀକୁ ଚାହିଁ କହିଲି, "ଯାଉଚି" ।

ସେ ଉତ୍ତର ଦେଲେନି । ତାର ଲମ୍ଫ ଗଡ଼ିବାର ବେଗ କେବଳ ଟିକିଏ ବଢିଗଲା ।

( ୪ ).

ଏ ଭିତରେ ଦୀର୍ଘ ସାତ ବର୍ଷ ବିତିଗଲାଣି । କମ୍ୟୁନିଷ୍ଟ ପାର୍ଟିର ଚିନ୍ତା ଓ କର୍ମପନ୍ଥାରେ ବହୁତ ପରିବର୍ତ୍ତନ ଘଟିଲାଣି । ବିପ୍ଳବର ଉନ୍ମାଦନା ଧରି ଯେଉଁମାନେ ପାର୍ଟି ଭିତରକୁ ଦିନେ ଆସିଥିଲେ ସେମାନଙ୍କ ଭିତରୁ କେତେ ନିଷ୍କ୍ରିୟ ହେଲେଣି, କେତେ ପାର୍ଟି ଛାଡ଼ି ଗଲେଣି, କେତେ ଦୂର ଦେଶରେ ଯାଇ ଚାକିରି କଲେଣି, କେତେ ଦ୍ୱନ୍ଦ୍ୱରେ ପଡ଼ିଚନ୍ତି, କେତେ କେରଳ ଉପରେ ଆଖି ରଖି ପାର୍ଟିର ପୁନର୍ଗଠନ ଚିନ୍ତାରେ ବ୍ୟସ୍ତ ଅଛନ୍ତି ।

ମୁଁ କିନ୍ତୁ ଭାବୁଚି କେବଳ ଏ ମାଟିର ଉଦାର ମାତୃତ୍ୱର କଥା । ଏ ମାଟିର ଗ୍ରହଣଶୀଳତା ଅପୂର୍ବ । ଏ ମାଟି ସର୍ବଂ ସହା । ଏ ମାଟି କଥା ଭାବିବା ମାତ୍ରେ ମୋର ମନେ ପଡ଼ିଯାଉଚି ରେବତୀର ସ୍ନେହ ଆଉ ସେ ଦୁଇ ଧାର ନୀରବ ଲୁହ ।



# ଆହା ମୋର ଗୁଣମଣିକି

ହସକୁ କେହି କେହି କାନ୍ଦଣାର ବିକୃତ ରୂପ ବୋଲି ମଣନ୍ତି । ଏ ତତ୍ତ୍ୱକୁ ସମର୍ଥନ କିବା ଖଣ୍ଡନ କରିବା ଦିଗରେ ମୁଁ କେବେ ଚିନ୍ତା କରିନି । କିନ୍ତୁ କାନ୍ଦଣାକୁ ହସର ବିକୃତ ରୂପ ବୋଲି, ପ୍ରାୟ ତିନି ମାସ ତଳେ ଆମ ଗାଁ ନାଥ ପଣ୍ଡା ମରିବା ପୂର୍ବରୁ, ମତେ ଯଦି କିଏ ତତ୍ତ୍ୱ ବତେଇ ଥାନ୍ତା, ମୁଁ ନିଶ୍ଚୟ ବିଗିଡ଼ି ଥାନ୍ତି ।

ତମେ ଦେଖୁଛ, ଜଣେ ବାହୁନି ବାହୁନି ସହାଧର କାନ୍ଦୁଛି, ଆଖିରୁ ନୋର ନିଗିଡ଼ି ପଡୁଛି, ସଡ଼ସାଡ଼ ନାକ ପୋଛୁଛି, ଛାତିରେ ହାତ ପିଟୁଛି, କାନ୍ଥରେ ମୁଣ୍ଡ କୋଡୁଛି, କେହି ବୁଝେଇବାକୁ ଆସିଲେ ଛଟିପିଟି ହଉଛି, ଏସବୁ ଦେଖିଲେ ତମେ କଣ ସତ କରିବ ଯେ ଏଇ କାନ୍ଦଣା ସେ ଲୋକର ହସର ବିକୃତ ରୂପ !

ତମେ ସତ କର ବା ନକର, ଏ ତତ୍ତ୍ୱ ଅନ୍ୟ କାହା ପ୍ରତି ସତ ହେଉ ବା ନହେଉ କିନ୍ତୁ ନାଥା ପତ୍ନୀର ଭାଗ୍ୟ ଆମ ଗାଁ ରତନୀ ଖୁଡ଼ିର କାନ୍ଦଣାରୁ ମୁଁ ଏ କଥାର ପ୍ରତ୍ୟକ୍ଷ କଲି ।

ମରିବାକୁ କଣ କାହାର କେବେ ଇଚ୍ଛା ହୁଏ ? ମରଣ ମୁହଁରୁ ଫିଟିବାର କୌଣସି ବାଟ ଯଦି ଥାନ୍ତା, ନାଥା କମିତ ହେଲେ ଖସି ଯିବାର ଫିକର କରିଥାନ୍ତା । ମରିବା ପାଇଁ ତାର ଜମା ମନ ବାଳି ନଥିଲା । କାରଣ ଏତେ କାମରେ ସେ ଲାଗିଥିଲା ଯେ, ସତ କହିବାକୁ ଗଲେ, ମରିବାକୁ ତାର ତର ନଥିଲା । ସେଥିରେ ପୁଣି ଭୋଟ ଆସି ଗାଁ ମୁଣ୍ଡରେ ହେଲାଣି ।

ବଳେ ନା ବଳେ ଯମ ନେବାର କଥା, ନେଇଥାନ୍ତା । କିଏ କଣ ଆପତ୍ତି କରିଥାନ୍ତା ନା ନାଥା ତମ୍ବାରେ ମୁଣ୍ଡ ବାନ୍ଧି ରହିଥାନ୍ତା ? ସେ କଥା ନାହିଁ ଯେ କମିତ ଅବେଳରେ ଆମକୁ ଠକି ଦେଇ ନାଥାକୁ ଯମ ଭେଣ୍ଡା ପଳେଇବା ଆମ ଗାଁ ଲୋକଙ୍କ ମନକୁ ପାଇନି । ସମସ୍ତେ ସେଇ କଥାର କୁହାକୁହି ହେଉଛନ୍ତି । ଏ ବିଷୟରେ ନିର୍ଲିପ୍ତ ହେଲେ ମଧ୍ୟ କେବେ କେବେ (ଆଗ ଆଗ ଭଳି ନିୟମିତ ଯଦିଓ ନୁହେଁ) ଦପହର ବେଳେ ଅବା ରାତିରେ ସାହି ଲୋକଙ୍କୁ ଭାତ ନିଦ ଧରି ଆସିଲା ବେଳେ ବାରି ମାଳ ଭିତରୁ ରତନୀ ଖୁଡ଼ି ବାହୁନା ଆରମ୍ଭ କରିଦିଏ ।

'ଆହା ମୋର ଗୁଣ ମଣି କି
ଚାଲିମ ହାତରେ ବଢ଼ିଥିବ କି...'

ରତନୀ ଖୁଡ଼ିର ଏ ଆଚରଣରେ ପାଖ ପଡ଼ଶା ଲୋକେ ପ୍ରାୟ ବିରକ୍ତ ହୁଅନ୍ତି । ହେବାର କଥା ମଧ୍ୟ, ଆଖି ପଡ଼ିଥିବ କି ନାହିଁ, କିଏ

ଯଦି ହଠାତ୍ ଭେଟେଗଲା ପରେ ବୋବାଇ ଉଠେ ସହଜରେ କଣ ଆଉ ନାଦ ଲାଗିବ ? ଅଭାବ ଅସୁବିଧାର ଏ କାଳରେ ଭଲକରି ଦାନ୍ତେ ଖୋଇବା ତ ସମସ୍ୟା ହେଲାଣି । ପିମ୍ପୁଡ଼ି କମ୍ବା ଓଡ଼ସ କାମୁଡ଼ିବାରେ ଯେତେ ଚମକ ଲାଗେନା ତାଠୁ ଅଧିକ ଚମକ ଲାଗେ ବାକ ଶୁଣିବାର ବାର ମନେ ପଡ଼ିଗଲେ । କିନ୍ତୁ ଆମ ଲୋକେ ଇମିତ ଅବୁଝାଣ ! ରତନୀ ଖୁଡ଼ିର କାନ୍ଦଣାରେ ଯମ ହସ୍ତଗତ ନାଥା ଉପରେ ବିରକ୍ତ ହେବାର କି କାରଣ ଅଛି ?

ଦୁଇ ପକ୍ଷରୁ ମୁଁ ଦୁଇ ପ୍ରକାର ଭାବ ଅନୁମାନ କରୁଛି । ନାଥା ମରିବାରେ ଆମ ଗାଁ ଲୋକେ ଯେ ସତରେ ଦୁଃଖିତ ସନ୍ଦେହ ନାହିଁ । କିନ୍ତୁ ଯମ ନେଲା କି ନାଥା ଗଲା, ଏଥର ଭୋଟ ବେଳକୁ ଆମ ଗାଁରେ ଯେ ଆଉ ଜଣେ କୁହାଳିଆ ରହିଲାନି ସେ ଜାଣିବା ତ ଅସନ୍ତୋଷ ଲୋକଙ୍କ ଗର୍ଭରେ କଣ ନାହିଁ ? ନିଶ୍ଚୟ ଅଛି । ବିରକ୍ତ ବେଳେ ଦାହାର ପଡ଼ିବା କିଛି ଅସ୍ୱାଭାବିକ ନୁହେଁ । କେଉଁ କେଉଁ ଅସତର୍କ ମୁହୂର୍ତ୍ତରେ ମଧ୍ୟ କେଉଁଠି କେଉଁଠି କାହା କାହା ମୁହଁରୁ, ଗୋଲରେ ହେଉ କି ଖେଳରେ ହେଉ, ଦାହାର ପଡ଼ୁଥିବା କଥା ମୋ କାନକୁ ଆସିଲାଣି । ଗୋଟାଏ ଘଟଣାରେ ମୁଁ ନିଜେ ଶୁଣିକରି ତ ଅବାକ୍ ହୋଇଯାଇଛି ।

ସେଦିନ ପୋଖରୀ ତୁଠରେ ଠିକ୍ଏ ଗହଳି ହୋଇଥାଏ । 'ସୁତରାଂ ହୁଡ଼ା ଉପର ଓସ୍ତଗଛ ମୂଳରେ ମୁଁ କିଛି ସମୟ ବସିଗଲି । ମଫସଲି ଲୋକେ ସାଧାରଣତଃ ବୋଇତାଳୁ ଉପରୁ କଥା ଆରମ୍ଭ କରି ବୋମା ଉପରେ ନେଇ ଛିଣ୍ଡାନ୍ତି । ପୋଖରୀ ତୁଠଟି ସେମାନଙ୍କର ସମ୍ବାଦ ଓ ଅଭିମତର କ୍ଷେତ୍ର । ଆଖଡ଼ା ଘର ମନ୍ତ୍ରଣାଳୟ । ଭୋଟ ପ୍ରସଙ୍ଗରେ ଭଲ ସାହୁର ନିଟ ବିଶ୍ୱାଳ, କୌତୁକରେ ଅବଶ୍ୟ, ମନ୍ତବ୍ୟ କଲା—

'ସ୍ତ୍ରୋଟ ଉଓାବୁ ହୋଇଲେ ନାଥା ନନା ମରିଥାନ୍ତେ କି ଏବର୍ଷ ଆଣ୍ଠି କରି ପୁଲେ ଧବ ଦେଇଥାନ୍ତେ ଯେ ବୁଢ଼ୀ ଠାକୁରାଣୀ ଘର ମୋହନା ଉପରେ ଝିକର ପଡ଼ଯାଇଥାନ୍ତା ।'

ନଟିଆର କୌତୁକ ମତେ ମୋଥ ବସେଇ ଦେଲା ପରି ଲାଗିଲା । ମଣିଷ ସତେ କେଡ଼େ ସ୍ୱାର୍ଥପର !

ନାଥାର ପ୍ରଶଂସା ରଡଣୀ ଖୁଡ଼ି ସହିପାରୁନ ବୋଲି ହୁଏତ ଏପରି ଅବେଳରେ ବାହୁନା ଧରୁଚି, କେବେ ବିରକ୍ତ ନହେବା ଲୋକ ମଧ୍ୟ ଯେପରି ବିରକ୍ତ ହେବ । ସମସ୍ତେ ସିନା ବାହାରୁ ଦେଖୁଥାନ୍ତି କିନ୍ତୁ ନାଥା ସଙ୍ଗେ ତ ଘରକର ନାହାନ୍ତି । ରଡଣୀ ଖୁଡ଼ି ଘର କରିଥିଲା ବୋଲି ତା ମନ ଇମିତ ରହେଇ ଖହେଇ ହଉଚି ।

ମୋର ଜେଜେ ବହୁଦିନର ଶ୍ୱାସ ରୋଗିଣୀ ଆଜି ଆସୁଛି । ଖାଇ ସାରିବା ପରେ ପରେ ସେ ଶେଜରେ ଶୋଇପାରେନ ଧଇଁ ଉଠେ ବୋଲି । ଦୁଇ ତିନ ଘଣ୍ଟା ବସି ରହି ଢୁଲାଉଥାଏ । ରଡଣୀ ଖୁଡ଼ିର ବାହୁନା କାନରେ ବାଜିବା ମାତ୍ରେ ବୁଢ଼ୀର ଛାଇନିଦ ଛୁଟିଯାଏ; ପାଖରେ ପଡ଼ିଥିବା ବାଡ଼ିଟି ଉପରକୁ ସ୍ୱତଃ ହାତ ପହଞ୍ଚିଯାଏ । ବୁଢ଼ୀର କଣ୍ଟାନଦଆ, ଉକ୍ତ କଣ୍ଠରୁ ବାହାରି ପଡ଼େ, "ଚାଲମ ହାତରେ ବାଇଥିବି କି—ଚାଲମ ତ ଝାମ୍ପି ନେଇ କୂଅରେ ଫିଙ୍ଗି ଦେଉଥିଲୁ, ଏବେ ଆଜି ବାହୁନା କାସ ପାଇଁ । ନାଥା ମରନାଇଁ ଯେ ତୁ କଣ୍ଟା ଡାହାଣୀ ମୁହଁରୁ ଡରି ଯାଇଚି ଲୋ··· ପୋଡ଼ା ମୁହଁ ତାହାକୁ ଆଜ ଶୋଇ ବସେଇ ଦେଲାନି ।"

ତା'ଠାରୁ ଦଶପନ୍ଦର ବର୍ଷରେ ବଡ଼ ଗାଁର ଆଜି ଆଜ ବୁଢ଼ାମାନେ ଯେତେ ତାଜା ଅଛନ୍ତି, ଫରଗୁରେ ଗୁଲବୁଲ କରୁଚନ୍ତି,

ଲୋଡ଼ା ପଡ଼ିଲେ କୋଉଣେ ଛ'ପା ଗୁଳି ମଧ୍ୟ ପାରୁଚନ୍ତି, ନାଥିର ମରିବା ବୟସ ହୋଇଥିଲା ବୋଲି କିଏ ଉପ୍ରୋଧ ଯୁକ୍ତି କହିପାରନ୍ତା ? ସମସ୍ତେ ତାର ବୟସ ବାନ୍ଧନ୍ତି ପଚାଶରୁ ଷାଠିଏ ଭିତରେ । ପଞ୍ଚାବନ ବୋଲି ଧରିଲେ କାହାର ବିଶେଷ ଆପତ୍ତି ହେବନି ।

ନାଥି ପିନା ପଞ୍ଚାବନ ବର୍ଷ ବୟସରେ ମଲା କିନ୍ତୁ ଗତ ତିରିଶି ବର୍ଷର ଯେଉଁ ଘଟଣା ବହୁଳ ଜୀବନ ବୃତ୍ତାନ୍ତ ସେ ରଖିଯାଇଚି, ଓଡ଼ିଶାର ଇତିହାସରେ ନରହିଲା ନାହିଁ ଆମ ଗାଁ ଇତିହାସରେ ନିଶ୍ଚୟ ସେକଥା ରହିବ । ଆମ ଗାଁରେ ନାଥି ଥିଲା ଆଧୁନିକତାର ଭଗୀରଥ । ନାଥିକୁ ଯେଉଁମାନେ ଦେଖିସହି ପାରନ୍ତିନି ତାକୁ କହୁଥାନ୍ତି ଟାଉଟର ବୋଲି । କିନ୍ତୁ ନିନ୍ଦୁକମାନଙ୍କ କଥାରେ ପଡ଼ି ବିଗୁର କଲେ ଆମେ ନାଥି ଜୀବନର ପ୍ରକୃତ ମୂଲ୍ୟଦେଇ ପାରିବାନି । ଅଧିକନ୍ତୁ, ମଲା ପରେ କାହାର ନିନ୍ଦା ରଟିବା ଆମର ସଂସ୍କୃତି ବିରୋଧୀ ।

ପିଲାଦିନେ ନାଥି କୁଆଡ଼େ ଥିଲା ବଡ଼ ମଉଜିଆ ମୁହାଁ । ତଣ୍ଟି କାଟି ଦେବ ବୋଲିଲେ ହେଲେ ତା ପେଟର କଥା ପାଟିରେ ଫୁଟେନି । ସନ୍ଧୁଥିରେ ଥାଇ ସେ ବୋଉଥିରେ ନଥିବ । ଏ ଗୁଣଟା ତାକୁ ପଛକୁ ବଡ଼ କାମଦେଲା । କାହା ବାଡ଼ିରୁ କଣ୍ଟିଆଳି କଖାରୁଟାଏ, କାହା ଗୁହାଳ କୋଣରୁ ସୀତାଫଳଟାଏ, କାହା ଗଛରୁ ପିଜୁଳିଟାଏ ନେଇଗଲା ବୋଲି ତାକୁ ଯଦି ଚୋର କହିବା, ତାହାହେଲେ ପିମସ୍ତ ଚୋର କୋଉ ପିଲା ନ କରିଚି ? ଏ ସବୁକୁ ପିଲାଳିଆ କୌତୁହଳ କୁହାଯାଇ ପାରେ । ତେବେ ପିଲା ଦିନରୁ ଚୋର ଅପବାଦ ରଟିଯିବାରୁ ପରା ବଡ଼ଦିନେ ତାର ସବୁ କାମକୁ ଲୋକେ ଚୋରି ବୋଲି କହିଲେ କିମ୍ବା କାହାର କାନ୍ଥ ଲଟେଇ ଛପେଇ ନେଇ

ଯିବାର ପିଲାଳିଆ କୌତୂହଳ ପର ତାଙ୍କୁ ବଡ଼ ଦଳେ ଗୋଚର କରିବାକୁ ପ୍ରବର୍ତ୍ତାଇଲା, ସେ କଥା କିଏ ଅବା କିପରି କରିପାରିବ ? ଏବେ ନାଥାର ଅନୁପସ୍ଥିତିରେ ସେ ସବୁ ବର୍ଣ୍ଣନା କରିବା ଉଚିତ ନୁହେଁ କି ଲାଭଜନକ ମଧ୍ୟ ନୁହେଁ ।

ଆମ ଗାଁରେ ପ୍ରଥମେ ଇଂରେଜୀ ଅକ୍ଷର ଶିଖିଲା ନାଥା । ଆଗକୁ ପଢିଥିଲେ ହୁଏତ କୋଉଠି କିଛି ଜଣେ ହୋଇ ପାରିଥାନ୍ତା କିନ୍ତୁ ପନ୍ଦର ବର୍ଷ ବୟସ ବେଳକୁ ସପ୍ତମ ଶ୍ରେଣୀରେ ତିନିଥର ମାଙ୍କଡ଼ ଡିଆଁ ମାରି, ପୁସ୍ତକ ବସ୍ତାନି ଗୁଡ଼ିଆ ଘରେ ବନ୍ଧକ ଦେଇ ଆଖଡ଼ା ଘରେ ଦାଣ୍ଡି ମୃଦଙ୍ଗ ପିଟିଲାଣି । ବାପ ବିଚରା କଣ ଆଉ କରନ୍ତା, ଦିନାକେତେ ଗାଳି କନ୍ଦାଳ କରି ତୁନି ହୋଇଗଲା । ଆମ ଗାଁ କୃଷ୍ଣଲୀଳା ଦଳର ନାଥା ହେଲା ମୁଖ୍ୟ ବାହାକ । ଦଳ ସଙ୍ଗେ ସେ କେତେ ବର୍ଷ ଖୁବ୍ ବୁଲିଲା । ହାତରେ ସୁନା ଖଡ଼ୁ, ଡାହାଣ ବାହୁଁରେ ବାଜୁବନ୍ଧ, କାନରେ କୁଣ୍ଡଳ, ତାରକସି ଅଣ୍ଟା ସୂତା, ବେକରେ ଧାନୁଆ ମାଳ, ଫୁଲମାଳ, କପାଳରେ ଗୋରଚନା ଚିତା ଉପରେ ସିନ୍ଦୂର ଗାର, ଜୁଡ଼ାରେ ଫୁଲ-ଝାମ୍ପା, ଜଉ ରଙ୍ଗର ବ୍ରହ୍ମପୁରୀ ପାଟ ପିନ୍ଧି ମଣ୍ଡଳ ଉପରେ ଉଭା ହୋଇଗଲେ ଶତ୍ରୁ ଆଖି ମଧ୍ୟ ଲୋଭେଇ ଯିବ । କେତେ ଖାଇ ଝୋକି ହେଉ ପଛେ ବାଆଁରେଇ ହେଲେ ଥରେ ଅନେଇ ଦେଇଥିବ । ନାଥାର ଭୁରୁ ନଚାଣି, ଆଖି ମିଟିକାଣି ଆଉ ପାଦ ଚଲାଣି ବଡ଼ ଉତ୍ସୁକାଣିଆ ।

ସେ କାଳରେ ଆମ ଅଞ୍ଚଳରୁ ବହୁତ ଲୋକ ବର୍ମା ଯାଉଥାନ୍ତି । ନାଥାର ନାନା ମହାନ୍ତି ରେଙ୍ଗୁନ ଯାଏଁ ଚାକିରି ପାଇଥିଲା । ନାଥା ବାହାରିଲା ରେଙ୍ଗୁନ । କେହି କେହି ଅବଶ୍ୟ କହନ୍ତି, ଗୋପିନାଥପୁର ଘୁଲଣରେ ବୋଉ ଝୋକର ପଣତ ଟାଣିଦେଲା ବୋଲି ସେ ଗାଁବାଲା

ଇମିତ ପରାଭବ ଦେଲେ ଯେ ଅଦ୍ୟ ସେ ଲଜରେ କୁଆଡ଼େ ନାଥା ରାଜ୍ୟ ଛାଡ଼ ପଳେଇଗଲା ।

ରେଙ୍ଗୁନରେ ତନଦର୍ଷ ରହି ସେ ଫେରିଆସିଲା ଗାଁକୁ । ଖଣ୍ଡିଏ ଦେତ ମସିଣା, ଗୋଟିଏ କମକରା କାଠ ସିନ୍ଧୁକ, ଆଗ ଦାନ୍ତ ଦୁଇଟିରେ ଦୁଇଟି ସୁନାଖିଲ, ଦେହର ଲୁଗାପଟା ଓ ପାଦର କାନ୍‌ଭାସ ଜୋତା ହାଲକ ଛାଡ଼ ଦେଲେ ଦେହରେ ତାର କେଉଁଠି ଚନେ ବୋଲି ସୁନା ଲଗି ନଥିଲା । ପଇସା ସେ ବିଶେଷ କିଛି ଆଣି ପାରି ନଥିଲା ବୋଧହୁଏ । ତେବେ ସବୁଠାରୁ ରହସ୍ୟମୟ ହେଉଛି ବର୍ମା ଜୀବନ ସମ୍ବନ୍ଧେ ତା'ର ନୀରବତା । ସେ ଯେପରି ଲୋକ ମିଛକୁ ସତ ମଶେଇ କହିଲାବାଲା । କିନ୍ତୁ ଖୋଳିତାଡ଼ି ନ ପଚାରିଲେ ସେ ଉପରେ ପଡ଼ି ବର୍ମା କଥା କିଛି କହେନା । ଆଶ୍ଚର୍ଯ୍ୟର କଥା, ତା' ପଛେ ପଛେ ଆସିବା ଲୋକ ମଧ୍ୟ ସେ ବିଷୟରେ କିଛି କହନ୍ତିନ । ବର୍ମାରେ ସେ କେଉଁଠି ରହିଲା, କଣ କଲା ଈଶ୍ୱରଙ୍କୁ କେବଳ ଗୋଚର । ଯେ ଯାହା ହେଉ ଏଇଠୁ ନାଥା ଜୀବନର ଗୋଟାଏ ନୂଆ ପର୍ଯ୍ୟାୟ ଆରମ୍ଭ ହେଲା । ରତନୀ ଖୁଡ଼ ତନଦର୍ଷ ହେଲା ଡଡ଼ କନିଆ ହେଇ ରହିଥିଲା । ବାପ ମରିଥିଲା ବର୍ଷକ ତଳୁ । ଫେରିବାର ଦୁଇମାସ ଭିତରେ ନାଥା ପୁଅଣି ହେଲା; ସିଙ୍କୁଲା ଜୀବନ ଆରମ୍ଭ କଲା ।

ନାଥାର ଜୀବନ ଏତେ ଘଟଣା ବହୁଳ ଯେ ସବୁ ଘଟଣା ଗୋଟି ଗୋଟି କରି କହିବା ସମ୍ଭବ ହେବନି । ଠିକେ ଠିକେ କହିଲେ ମଧ୍ୟ ପୋଥିଏ ହେବ । ତେବେ ମାସପରେ ମାସ, ବର୍ଷପରେ ବର୍ଷ ବିତିବାରେ ଯେପରି ଜଣାପଲା ବିବାହିତ ଜୀବନରେ ସେ ସୁଖୀ ହେଇ ପାରିନି । ମଝିରେ ମଝିରେ, ପାଞ୍ଚ ସାତଦିନରେ ଥରେ, ରାତ

ଅଧରେ ରତନୀ ଖୁଡ଼ୀର କରୁଣ ରଲାର ନାଥାର ପ୍ରଣୟ ଜୀବନର କଲ୍ୟାଣ ଘୋଷଣା କରେ । ପ୍ରଥମେ ପ୍ରଥମେ ପାଞ୍ଚ ପଡ଼ଶା ଲୋକେ ଯାଇ ନାଥାର ମରଣ ପାଶରୁ ରତନୀ ଖୁଡ଼ୀକୁ ଉଦ୍ଧାର କରନ୍ତି । କିନ୍ତୁ ପରେପରେ ଏ କୀଡ଼ା ସମସ୍ତଙ୍କର ଦେହସହା ହୋଇଗଲା । କଥାରେ କହନ୍ତି, ମାଇପି ପିଠି ମୃଦଙ୍ଗର ଷେଯ୍ୟା । ଥରେ ହାତ ବସେଇ ଦେଲେ ଆଉ କେବେ ଶୁଖୁଁ । ହୁଏନି । ପ୍ରଥମେ ପ୍ରଥମେ ମାଡ଼ ବସିଲେ ରତନୀ ଖୁଡ଼ୀ ବିକଳ ସ୍ୱରରେ କାନ୍ଦେ କେବଳ । ପରେ ପରେ ସେ ତାର କାନ୍ଦଣାରେ ଗୋଟାଏ ବଡ଼ ବିଭୂତି ଯୋଗ କଲା । ଆଖି ବୁଜାଣିଆରେ ପାଞ୍ଚ ସାତଟା ଥୋଇଦେଇ ନାଥା ବାଣ୍ଡପିଣ୍ଡାକୁ ବାହାରି ଆସେ । ବାରପିଣ୍ଡାରୁ ରତନୀ ଖୁଡ଼ୀ ମୁହଁରେ ନ ଧରବା ଗାଳି କାଢୁଣି ମେଲ୍ଦିଏ । କିନ୍ତୁ ଲକ୍ଷ୍ୟ କରିବାର କଥା ଦୀର୍ଘକାଳର ଏଇ ବିବାହିତ ଜୀବନରେ ଦିନବେଳେ ଏମାନେ କେବେ କଳି କରି ନାହାନ୍ତି ।

ଦିନବେଳେ ସମୟ ବା କେଉଁଠି ପାଆନ୍ତେ ? କୁକୁଡ଼ା ଡାକିଲା ବେଳୁ ରତନୀ ଖୁଡ଼ୀ ଯିବ ଢେଙ୍କି ଉପରକୁ । ଚାଳମରୁ ଦାଆ କସା କସିଦେଇ ସକାଳୁ ଘରୁ ବାହାରି ପଡ଼ିଲେ ନାଥା ଯାଇ ଫେରିବ ଗୋଧୂଳି ବେଳକୁ । ସାଗ ମୁଠା ଯାହା କିଛି ଗଣ୍ଡେ ପେଟରେ ଭରତ କରିଦେଇ ପୁଣି ବାହାରି ଯିବ ସେ ବାଡ଼ରେ ଆସି କବାଟ ଦୁର ଦୁର ବାଡ଼େଇଲା ବେଳକୁ ଯାହା ନିଶବଦ ହୋଇଣି । ଘରର ମାଲିକ, ଭଲ ମନ୍ଦରେ ସେ କେବେ ନଥାଏ । ନିଜ ଘରର ଏ ନାଥାକୁ ବାହାରର ନାଆରେ କେହି ଚାରି ପାରନ୍ତିନି ।

କୋଉଠି ଘର ପୋଡ଼ିଲା, ନାଥା ସେଇଠି ହାଜର; କୋଉଠି ମଡ଼ା ପଡ଼ିଛି, ଡାକ ନାଥାକୁ; କୁଲି ନେବାପାଇଁ ସରଦାର ଆସିଛି,

ଧର ନାଥାକୁ; କିଏ ବଳଦ ବିକ ସିପ୍ତ ବାନ୍ଧିବା, ପଗ୍ଭର ନାଥାକୁ; କିଏ କନିଆ ପ୍ରସଙ୍ଗରେ ଯାଉଚି, ନାଥା ନନ୍ଦିବ କିମିତ ? କିଏ କାହା ବିରୁଦ୍ଧରେ କଚେରୀକୁ ଯିବ, ଓକିଲ ଖଞ୍ଜିଦେଲା ନାଥା; କାହା ପୁଅ କି ଟେରସ୍ତ ବର୍ମାରେ ଅଛି, ଚିଠି ଲେଖି ଦେବ ନାଥା; କାହାର ଦେହକୁ ଲାଗିଚି, ଡାକ ନଡାକ ନାଥା ଯାଇ ସେଇଠି ତିଆର । ଆଖ ପାଖର ଦଶ ପଚିଶଖଣ୍ଡ ଗାଁରେ ନାଥା ଜାଣାହାର ହୋଇଲା । ନିନ୍ଦୁକମାନେ କହନ୍ତି ଯେ ଏପରି ସବୁ କାରବାରରୁ ଠାଉଁଠର କରି ନାଥା ଭଲଭାବେ ପାଞ୍ଚ ପଇସା କରନିଏ । ଆଚ୍ଛା କଥା ! କିଏ କଣ କେବେ ହେଲେ ଦେଡିରେ କରନ୍ତା ? ରୋଜଗାର କରି ସେ ତ ଘରର ମାଟିକୁ ଇଟା କରନି; ଚେନାଏ ହୋଲି ଘାସ କୋଉଠି କିଣିନି; ମାଆଘରୁ ଆଣିଥିବା କଳା ମାଳିର ସୁନା କଣ୍ଠି ଛାଡ଼ିଦେଲେ ରଜନୀ ଖୁଡ଼ି ଦେହରେ ତ ଧାନେ ସୁନା କୋଉଠି ଲାଗିନି । ତେବେ, ଆଗେ ଆଗେ ସଞ୍ଜ ସକାଳର କେବଳ ଚଳମ ଦଉଡ଼ୁ ଥିଲା । ଆଜି ଏବେ ଯେ ତିଛିନାତି ଚଳମ ପାଖରେ ପାଖରେ । କୋଉଠି କି ଯିବା ହେଲେ ଚଳମ ନେବା ଅସୁବିଧା ହେଲେ ବିଡ଼ିରେ ଭରତ କରି ନେଇଯାଏ ସାଥିରେ । ନାଥା ଯଦି ନିଜ ପାଇଁ କେବଳ ଭାବି ଥାନ୍ତା, ତା'ର ଯେବେ ମନୋଭାବ ନଥାନ୍ତା, ଲୁଣମରା ଆନ୍ଦୋଳନରେ ପଶି ଜେଲ ଯାଆନ୍ତା କାହିଁକି ?

ନାଥା ପଡ଼ିଗଲା ଆଜି ଗୋଟାଏ ସୁଅରେ । ଗ୍ଭରି, ଛ' ମାସରେ ଥରେ ଓଳିଏ ଗାଁକୁ ଆସି ପୁଣି ଉଆଁ ମାରିଦିଏ ସେ କଟକ ଆଡ଼େ କୁ ଆଡ଼େ । କଣ କରୁଚି, ମାସ ମାସ ଧରି ବାହାରେ କିମିତ ରହି ପାରୁଚି ବୋଲି ଆମ ଲୋକଙ୍କୁ କୁଆଡୁ କିଛି ଗୋଟିଏ ମିଳେନି । ରଜନୀ ଖୁଡ଼ୀ ହେଟ୍ଟୁଘରର ଧାନ କୁଟି କୁଟି ଅଣ୍ଟା ପିଠି କାଠ ହେଇ

ଗଲାଣି । ଭାତ ତୋରାଣି କରି ଦୁଖେ ସୁଖେ ଚଳି ଯାଉଛି । କିନ୍ତୁ ଦିନେ ହେଲେ କେବେ ନାଥା କୁଆଡ଼େ ଗଲା ବୋଲି ସେ ଭାବିଲେଣି କରନି କିମ୍ବା କାହା ଦୁଆରେ ଗୋଡ଼ ଭାଙ୍ଗି ଠିଆ ହୋଇନି । ବରଷକୁ ବରଷ ଘର ଛୁଆଣି କରୁଛି, କଂସା ପିତ୍ତଳ ସଜ କେତେଖଣ୍ଡ ମିଶାଇଲାଣି, ଧାନ ମୁଗ ମଧ୍ୟ କିଛି ପଡ଼ିଛି ଘରେ, ସାତ ଆଠ କୋଡ଼ି ଟଙ୍କା ଋଣ ଦେଲାଣି ବୋଲି ଶୁଣାଯାଏ । ମୋଟ ଉପରେ ଏକା ଏକା ଜୀବନ ବିତାଇ ଦେବା ଲାଗି ସେ ପ୍ରସ୍ତୁତ ହୋଇ ଯାଇଛି । ବରଷକେ ଥରେ ଅଧେ ନାଥା ଯାହା ଆସୁଥିଲା, ତିନି ଚାରି ବରଷ ପରେ ସେତକ ବି ବନ୍ଦ ହୋଇଗଲା । କଟକଟା ବାର ବରଷ ତାର ଆଉ ମୁହଁ ଦିଶିଲାନି ଗାଁରେ । ଆମ ଗାଁ ଜୀବନରୁ ତାର ସବୁ ସଂପର୍କ ତୁଟିଗଲା ।

ବାର ବରଷ କିଛି କମ ସମୟ ନୁହେଁ । ଏ ଭିତରେ ଗାଁର କେତେ ଚାଳଘରେ ଝିଙ୍କର ପଡ଼ିଲାଣି । କେତେ ଉହାରେ ଦୁଦୁରା ଉଠିଲାଣି । କେତେ ମରିହଜି ଗଲେଣି । କେତେ ଜନମ ହେଲେଣି କେତେ ଝିଅ ବୋହୂ ହେଲେଣି । କେତେ ନାକ ତଳେ ନିଶ ଗଜୁରିଲାଣି । ନାଥା ମରିଛି କି ଜିଇଁଛି ଭାଳିବାକୁ ତର କାହାକୁ ଅଛି !

ହଠାତ୍ ଦିନେ ଉଦୂରଦିଆ ଦ'ପହର ବେଳେ ବାବନାଭୂତପରି ନାଥା ଆସି ଘରେ ହାଜର । ମୁହଁରେ ଦାଢ଼ି ସାଲୁବାଲୁ, ଦେହରେ ଅଦଡ଼ ଗାମୁଛା ଚଦର, କାନ୍ଧରେ ଝୁଲୁଛି କୋଥଳିଟିଏ । ଠିକଏ ମୋଟେଇ ଯାଇଛି । ନାଥା ଆଉ ରତନୀ ଖୁଡ଼ୀର ପୁନର୍ମିଳନ କିପରି ଭାବରେ ହେଲା—ଖୁଡ଼ୀ ଆଖିରୁ ନିଆଁ ଝଡ଼ିଲା କି ଲୁହ ଝଡ଼ିଲା—ସେକଥା କେହି ଜାଣି ପାରିଲେନି । କିନ୍ତୁ ଖୁଡ଼ୀ ମନ ଯେ କଅଁଳ

ଅସ୍ତୁ, ଜଣା ପଡ଼ିଲା ନାଥ ଆସିବା ବାସି । ମୁହଁ ସଞ୍ଜବେଳେ ପିଣ୍ଡା ଉପରେ ବସି ନାଥ କଲମ ସଙ୍ଗେ ଏକାତ୍ମ ହୋଇ ଯାଇଛି । ଏଲୁଣ୍ଡ୍ରିକୁ ଲାଗି ଘର ଭିତରେ ବସିଛି ଖୁଡ଼ୀ । ଥରକୁ ଥର ଜେଲ୍ ଯାଇ, ସୂତାକାଟି, ଗାଁ ଗାଁ ବୁଲି ଖଦଡ଼ ବିକି କରି ନାଥ ଗାଁ ଭୁଲିଛି, ଘର ଭୁଲିଛି; ଭୁଲିନି କେବଳ କଲମ ଖଣ୍ଡିକୁ । ଗାଁରେ ତା'ର ହଜିଲା ଧନଟିକ ଖୋଜି ଆଣିବାରେ କଲମ ଖଣ୍ଡିକଇ ଯୋଗସୂତ୍ର । ନାଥ ପୁଣି ଗାଁ ଜୀବନରେ ସ୍ମୃତି ହୋଇଗଲା ।

ପୋଖରୀର ପଙ୍କ ଉଦ୍ଧାର ହେବ, ଜଗନ୍ନାଥ ମନ୍ଦିରର ମଣ୍ଡପଟି ଲେଉଟା, ଅଭାବ ଅଭିଯୋଗ ନେଇ ପ୍ରଜାଏ ଯିବେ ଜିଲ୍ଲା ହାକିମ ପାଖକୁ, ଭେଣ୍ଡିଆମାନେ ଲାଗିଛନ୍ତି ଗାଁରେ ଗୋଟାଏ ପାଠାଗାର କରିବେ, ପାଖ ଗାଁ ସଙ୍ଗେ ବଙ୍କିର ବିବାଦ ନତୁଟିଲେ କଚିରି ଚାଲିବା ନିଦାନ, ଗାଁ କୋଠକୁ ଯିଏ ପାଞ୍ଚଶ ଟଙ୍କା ଦେବ ସେ ଏଥର ଭୋଟ ପାଇବ—ଏପରି ନାନା ବିଷୟରେ, ପଲ୍ଲୀରୁ ପେଲାପେଲି, ନାଥ ପୁଣି ଆସି ଆଗରେ ହେଲା । ନାଥର କୋଥଳାଟିକୁ ନିନ୍ଦୁକ-ମାନେ ଭଲ ମୁଣି ଆଖ୍ୟା ଦେଇଥାନ୍ତି । କୋଥଳା ବି ବେଶ୍ ଚମତ୍କାର କେତେ ବରଷ ।

ଖୁଡ଼ୀ ବି ଏଣିକି ଖୁବ୍ ହୁସିଆର ହେଲାଣି । ନାଥ ଘରକୁ ଫେରିଲେ ପ୍ରଥମେ ତା'ର କୋଥଳା ଓ ଅଣ୍ଟାର ଖୋଷଣି ଦରାଣ୍ଡି ପକାଏ । ପଇସେ ଅଧଲେ ଯାହା ପାଇଲା, ପଶିଲା ତା'ର କବ୍ଜରେ । ଧାନ କୁଟି କୁଟି ଯିଏ ପଇସା ଦେଖିଛି ଜାଣି କଉଡ଼ିକରେ ବି ତାର ଲୋଭ । ନାଥ ବଡ଼ ହଇରାଣରେ ପଡ଼େ ।

ଦିନେ ଦିନେ, ଦୀପ ଲାଗିଲା ବେଳକୁ ଖୁଡ଼ୀ ଦୋବାଲା ଗ୍ଲଡ଼େ । ଘାଇ ଉଚ୍ଛୁଳା ପାଣିପରି ନାଥ ଉପରକୁ ମାଡ଼ ଆସେ ବାରପଟରୁ ।

କଲବଲରେ ଘରୁ ବାହାରିପଡ଼ି ନାଥା ମାଛୁ ଅନ୍ଧାରରେ ମିଳାଇ ଯାଏ । ଖୁଡ଼ୀ ଗାଳିକଜା ହୁଏ—ହାତରେ ପାଇଲେ ବଞ୍ଚାରେ ହେପରି ଖାଇଯିବ । କଂସା ଥାଳଟାର ପଇସା ସେ ଆଣୁରି ଖଞ୍ଜୁରିକୁ ଶୁଣିବ, କୁଆଡ଼େ ନେଇ ମାଯ୍ନା କରିଦେଲା ସତେ !

କେବେ ବାସନଟାଏ, କେବେ ଗୁଡ଼ଲ ଗଜଣୀଏ, କେବେ ବା ଆଉ କିଛି କଉଡ଼ିଆ ଦରବ ଟାଏ, ଥରକ ପରେ ଥରେ ଘରୁ ବାହାରି ଯାଏ । ଗୋଟାଏ ଜିନିଷ ହଜିଦା ଜଣା ପଡ଼ିଲେ ସାରଦିନଯାଏ ନାଥା ଆଉ ଘରେ ମୁହଁ ମାଡ଼ିନ୍ତିନି । କିନ୍ତୁ ଯେଉଁ ଦିନ ସେ ରେଙ୍ଗୁନରୁ ଆଣିଥିବା ସିନ୍ଦୁକଟି ଉଭେଇ ଗଲା, ଖୁଡ଼ୀ ପାଞ୍ଚ ଓଳିଯାଏଁ ପାଣି ଛୁଇଁଲାନି । ନାଥା ମଧ୍ୟ ଫେରିଲା ।

ପ୍ରାୟ ଛଅ ବରଷ ପରେ କୋରାପୁଟରୁ ପାଲିଙ୍କର ଧରି ସେ ଫେରିଲା ଘରକୁ । ଦୁଇ ବରଷ ଏଣେତେଣେ ଅଇଁଠା ପତରପରି ଉଡ଼ି ଉଡ଼ି ଶେଷରେ ସେ ଯାଇ ଜୁଟିଥିଲା ଭୂଦାନବାଲାଙ୍କ ମେଳରେ । ଗାଁରେ ରହି ଏଥର ସର୍ବୋଦୟ କାର୍ଯ୍ୟ କରିବ ବୋଲି ସେ ଆମକୁ ଶୁଣାଇ ଦେଲା । ଗାଁର ବୁଢ଼ା ବୁଢ଼ା ସାହୁକାର ମହାଜନଙ୍କୁ ନେଇ ସେ ଭୂଦାନ କମିଟି ଗଢ଼ିଲା । ଗୁହାଳିଘରେ ସୂତାକଟା କେନ୍ଦ୍ର ଖୋଲିଲା । ପ୍ରତି ଶୁକ୍ରବାର ସଞ୍ଜରେ ଆଖଡ଼ା ଘରେ ପ୍ରାର୍ଥନା ସଭା କରି ବିନୋବାଙ୍କ ନାମ ପ୍ରଚାର କଲା । ଏ ଖଣ୍ଡରେ ଗୋଟାଏ ବଡ଼ ସଭା କରି କେଉଁ ଜଣେ ମନ୍ତ୍ରୀଙ୍କୁ ଆଣିବ ବୋଲି ଯୋଗାଡ଼ କରୁଥିଲା । କିନ୍ତୁ ଚାଲିମ ନପଡ଼ିଲା ଯାଏଁ ରଉଣୀ ଖୁଡ଼ୀ ନାଥାକୁ ବିଶ୍ୱାସ କରନ୍ତା କିମିତି ?

କେହି କୁଆଡ଼େ ଜାଣି ନାହାନ୍ତି, ସାତ ଓଳିଆ ଜରଟାରେ ନାଥା ହଠାତ୍ ଆଖି ମୁଦି ଦେଲା । ରଉଣୀ ଖୁଡ଼ୀର ମନରେ ବିଶ୍ୱାସ ଆଣିବା

ପାଇଁ କମ୍ପା ତାର ଏତେ ବର୍ଷର ସୁଖ ଦୁଃଖର ସାଥି ଚାଲମଟିକୁ ଛାଡ଼ିବା ପାଇଁ ସତରେ ସେ ସମୟ ପାଇ ନଥିଲା ।

କିନ୍ତୁ ଦାନ ଡଲେ ରତନୀ ଖୁଡ଼ୀ ଆମ ଘରକୁ ଆସିଥିଲା କୌଣସି କାମରେ । ମୁହଁରେ ପଡ଼ି ଯିବାରୁ ମୁଁ ଟିକିଏ ସହାନୁଭୂତ ପ୍ରକାଶ କରି ଦେଲି । ଖୁଡ଼ି ଟିକିଏ ସଚେଇ ହୋଇ ଦ'ଧାର ଲମ୍ବ ଗଡେ଼ଇ ଦେଲା । କିନ୍ତୁ ପର ମୁହୂର୍ତ୍ତିରେ ଆଖି ପୋଛି କହିଲା "ମାଇ, ପୁଅ, ମତେ ଭଲବାଲ କରି ପଢାଇଲା । ବଗୁଡ଼ ପିଲା ସାତ କୋଣ କଲଘର କୋଉଠି କେତେ ଲଗୁନ୍ତ ? ଆଜି ଚାଲଟେ ନାଇଁ ତ କାଲି ଗିନା ନାଇଁ । କାଳକ ଯାକ ଧାନ କୁଟି କୁଟି, ପେଟକୁ ପିଠିକି ନାଅଣ୍ଟ କରି, ମୁଁ ଯାହା ଗୋଟେ ଗୋଟେ ମିଶାଇଥିଲି—ମୋ ପ୍ରାଣକୁ କମିତ ବାଧୁନଥିବ ! ଯେତେ ଯାହା ହୀନଶିମା କଲେ ସମ୍ଭାଳି ଥିଲି, ହେଲେ ପୁଅ, ସେ ସିନ୍ଧୁକଟା ଯିବା ଦିନରୁ ମୋ ମନ ଛୋଟ ହୋଇଗଲା ।"

ଖୁଡ଼ୀର ଲମ୍ବ ଦ'ଧାର ଆନନ୍ଦ କି ଦୁଃଖର କଣ ବୋଲି ମନେ କରନ୍ତ !

ପାଖ ପଡ଼ିଶା ଲୋକଙ୍କର ଭ୍ରାନ୍ତ ନାଦ ବଗାଡ଼ି, ରତନୀ ଖୁଡ଼ୀ ଏବେ ବି ଭେଉରଣ୍ଡାପରି ବୋବାଏ ବେଳେ ବେଳେ—

"ଆହା ମୋର ଗୁଣମଣିକା···



# ମିସ୍ ସୁଚିତ୍ରା ସାମନ୍ତରାୟ

( ୧ )

ମିସ୍ ସୁଚିତ୍ରା ସାମନ୍ତରାୟଙ୍କ ଆତ୍ମହତ୍ୟା ସମ୍ବାଦ ସମ୍ବାଦପତ୍ର ମାନଙ୍କରେ ଯେଉଁ ଦିନ ପ୍ରକାଶ ପାଇଲା ସେଦିନ ଅନେକେ ବିସ୍ମୟରେ ଅଭିଭୂତ ହୋଇ ପଡ଼ିଲେ । ବିସ୍ମୟର କାରଣ ବି ଥିଲା ବହୁତ । ସୁଚିତ୍ରା ଥିଲେ 'ମନ୍ଦାକିନୀ ମହିଳା କଲେଜ'ର ଇତିହାସ ଅଧ୍ୟାପିକା, 'ନାରୀ କଲ୍ୟାଣ ସମିତି' ଓ 'ପ୍ରାଦେଶିକ ପରିବାର ଯୋଜନା ପରିଷଦ'ର ସଂପାଦିକା, 'କଳାବତୀ ସଂସଦ' ଓ 'ସବୁଜ ମଣ୍ଡଳୀ'ର ପରିଚାଳିକା । ଏପରି ବିବିଧ ସାମାଜିକ ତଥା ସାଂସ୍କୃତିକ ଅନୁଷ୍ଠାନ ସଙ୍ଗେ ସେ ଘନିଷ୍ଠ ଭାବେ ସଂପୃକ୍ତ ଥିଲେ । ମୃତ୍ୟୁ ବେଳକୁ ତାଙ୍କର ବୟସ ହୋଇଥିଲା ଚଉରାଳିଶି ବର୍ଷ ଚଉଦ ଦିନ । ବୟସ, ପ୍ରତିଷ୍ଠା, ସଙ୍ଗତି—ଯେ କେଉଁ ଦିଗରୁ ଦେଖିଲେ ହେଲେ

ସୁଚରିତା ଆତ୍ମହତ୍ୟା ପାଇଁ ମନ ବଳାଇବେ ବୋଲି କେହି କେବେ ଆଶଙ୍କା କରି ନଥାନ୍ତି ।

ଏହି ଘଟଣାର ଠିକ୍ ଚଉଦ ଦିନ ପୂର୍ବରୁ, ପଞ୍ଚଵିଂଶ ଜନ୍ମଦିନ ପଦାର୍ପଣ କରିବାରେ, ମୁଁ ତାଙ୍କୁ ଅଭିନନ୍ଦନ ଜଣାଇଥିଲି । ଧନ୍ୟବାଦ ଜଣାଇ ଫେରନ୍ତା ଡାକରେ ସେ ଉତ୍ତର ଦେଇଥିଲେ: "ବନ୍ଧୁ, ମୋର, ଜୀବନ ପ୍ରତି ମୋର ଅନୁରକ୍ତି ଦିନକୁ ଦିନ ଏବେ ନିବିଡ଼ତର ହେଉଛି ଯେ ବେଳେ ବେଳେ ଆନନ୍ଦର ଅଧୀରତାରେ ମୁଁ ବିବେଚନା ଶୂନ୍ୟ ହୋଇ ପଡୁଛି । ମନେ ହେଉଛି, ଦୁନିଆରୁ ପାଇବା ଲାଗି ମୋର ଆଉ କିଛି ନାହିଁ । ସନ୍ତୋଷର ସ୍ରୁପରେ ଥରେ ଥରେ ବଡ଼ ଅବସନ୍ନ ମନେ କରୁଛି ।"

ସୁଚରିତାଙ୍କ ଚିଠିଟି ପାଇବା ଦିନ ଆମ ଉଭୟର ହିତୈଷୀ ତଥା ଗୁଣମୁଗ୍ଧ ଡାକ୍ତର ଗୁଣନିଧି ବାବୁ, କଟକରୁ ଭୋପାଳକୁ ସ୍ଥାନାନ୍ତରିତ ହେବାର ଯାତ୍ରା ଅବକାଶରେ, ଦିନକ ପାଇଁ ମୋ ପାଖରେ ଓହ୍ଲାଇଥାନ୍ତି । ଚିଠିଟି ତାଙ୍କୁ ଦେଇ ପଚାରିଲି: "କଣ ମନେ କରୁଚନ୍ତି ଏଥିରୁ ?"

ସନ୍ତାନର କୃତିତ୍ୱ କଥା ଶୁଣିଲେ ପିତାର ମୁହଁରେ ଗୌରବର ଆନନ୍ଦ ଯେପରି ଝଲସି ଉଠେ, ଗୁଣନିଧି ବାବୁଙ୍କ ମୁହଁରେ ମୁଁ ସେହି ଚିହ୍ନ ଦେଖିଲି । ଗଦଗଦ କଣ୍ଠରେ କହିଲେ, "ତୁମ ଦୁଇଜଣ କଥା ଭାବିଲେ ବାସ୍ତବିକ୍ ମୁଁ ବଡ଼ ଗୌରବ ଅନୁଭବ କରେ । ସଫଳତାର ସୁଖରେ ଜ୍ଞାନଶୂନ୍ୟ ନହୋଇ ତୁମେ ଉଭୟେ ଜୀବନକୁ ପ୍ରକୃତ ରୂପେ ଉପଯୋଗୀ କରିପାରିଚ । କିନ୍ତୁ ତୁମେ ଦୁହେଁ ଏପରି ନିଃସଙ୍ଗ ରହିଯିବା ମୋ ପକ୍ଷରେ ବଡ଼ କ୍ଳେଶକର ହୋଇଚି । ସୁଚରିତାର

ଦେହର ଦମ୍ଭ ଶିଥିଳ ହୋଇ ଆସୁଛି । ଏତେଦେଳେ ବହୁଦିନର ଅନାଦୃତ, ଆଶ୍ରୟ ପ୍ରତ୍ୟାଶୀ ମନ ସାଥୀ ଖୋଜି ବସିବା ସ୍ୱାଭାବିକ । ତୁମେ ପୁଣି ପ୍ରସ୍ତାବ କଲେ ଏଥର ସେ ରାଜି ହୋଇପାରେ ବୋଲି ମୋର ଆଶା ବଳୁଛି ।"

ସୁଚେତା ମୋର ସମବୟସୀ । କିନ୍ତୁ ପଅଁଚାଳିଶ ବର୍ଷ ବୟସରେ ମୁଁ କିପରି ବା ତାହାଙ୍କ ସେ ବିବାହ ପ୍ରସ୍ତାବ କରିବାକୁ ଯାଆନ୍ତି ଏବଂ ଉପସ୍ଥିତ ପରିସ୍ଥିତିରେ ତାହା କିପରି ଅର୍ଥହୀନ ଆମ ପ୍ରତି ଅତଶୟ ସ୍ନେହ ବଶରୁ ସମ୍ଭବ, କିମ୍ବା ଅନ୍ୟ ଏକ ପାର୍ଶ୍ୱରୁ ଦେଖିଲେ ଏକାନ୍ତ ଆବଶ୍ୟକ ମନେକରି ହୁଏତ, ସେ ଇତର ଯୁକ୍ତି ଗ୍ରହଣ କରିବାକୁ ଚାହିଁ ନଥାନ୍ତେ । ତଥାପି ଚିଠିର ଅନ୍ୟ ଏକ ଅଂଶ ପ୍ରତି ତାଙ୍କର ଦୃଷ୍ଟି ଆକର୍ଷଣ କଲି :

"......ବହୁବାର ତୁମ ମନରେ ଆଘାତ ଦେଇଛି । ଫଳରେ ମୁଁ ବଣ କମ୍ ଆହତ ହୋଇଛି ! କିନ୍ତୁ ଏ ଅବସ୍ଥାରେ ଆଉ ସେସବୁ ପର୍ଯ୍ୟାଲୋଚନା କରି ଦେଖିବାର ଅବକାଶ ଅଛି ବୋଲି ଭାବି ପାରୁନି ।......"

ଉଭୟେ କିଛିକ୍ଷଣ ନୀରବ ରହିଲୁ । କହିଲି, "ଏଥିରେ ସେ ସମ୍ଭାବନାର ପ୍ରଶ୍ନ ଆଉ ଉଠୁଛି କୋଉଠୁ ? ସେ ଯାହାହେଉ, ଏ ଚିଠିଟି ପାଇବା ଦିନରୁ ମୁଁ ଟିକିଏ ଉଦ୍‌ବିଗ୍ନତା ଅନୁଭବ କରୁଛି । ମୋର ଆଶଂକା ହେଉଛି, ସୁଚେତା ହୁଏତ ଚଞ୍ଚଳ ପାଗଳ ହୋଇଯିବ କିମ୍ବା ପ୍ରାଣତ୍ୟାଗ କରିବ ।"

ମୁହୂର୍ତ୍ତିକ ପାଇଁ ଗୁଣନିଧି ବାବୁ ଆତଙ୍କିତ ହେବା ଭଳି ଜଣାଗଲେ । କିନ୍ତୁ ପର ମୁହୂର୍ତ୍ତରେ ହସିହସି କହିଲେ, "ତୁମେ

ଲେଖକ କିନା, ତୁମର ଅନୁସନ୍ଧିତ୍ସୁ ମନ ଅତି ସାଧାରଣ କଥାରୁ ମଧ୍ୟ ସବୁବେଳେ ଅସାଧାରଣର ସୂଚନା କେବଳ ଖୋଜି ବସେ । ଏ ପ୍ରକାର ଦୁଶ୍ଚିନ୍ତାକୁ ମନରେ ସ୍ଥାନ ଦିଅନି ।"

ସୁଚରିତାର ଆତ୍ମଗୋପନ କରିବା ଉଦ୍ୟମ ଶେଷଟିରେ ଯେ ବିଫଳ ହୋଇଯାଇଛି, ଶ୍ରୀନିଧି ବାବୁଙ୍କୁ କହିବା ପସନ୍ଦ କଲିନି । ସ୍ରୋତ ସଙ୍ଗେ ମୁଁ ଜଡ଼ିତ ଥିଲି ବୋଲି ସୁଚରିତା ପ୍ରାଣର ବନ୍ୟାର ପ୍ରବଳତା ମୁଁ ଅନୁଭବ କରିଛି । ସେ ବୁଝିପାରନ୍ତେ କିପରି ? ସୁତରାଂ ଏ ଦୁଃସମ୍ବାଦରେ ମୁଁ ବିଚଳିତ ହେଲି ଯଦିଓ, ବିସ୍ମିତ କିନ୍ତୁ ହେଲିନି ।

( ୨ )

ସୁଚରିତା ସଙ୍ଗେ ମୋର ପ୍ରଥମ ଆଳାପ ଘଟିଲା, ପୌର ଜୀବନ ପକ୍ଷେ ଅପରିହାର୍ଯ୍ୟ, 'ଏକ ସାମାଜିକ ମିଳନରେ । ତାର ସମ୍ପୂର୍ଣ୍ଣ ପରିଚୟ ମୁଁ ପାଇଛି ବୋଲି କହିପାରିବିନି । କୌଣସି ଜଟିଳ, ନିଦାନ ଅତୀତ ରୋଗରେ ଡାକ୍ତର ଯେପରି ଉପସର୍ଗର ଉପଶମ ଉପରେ କେବଳ ନିଜର ସମସ୍ତ କୁଶଳତା ପ୍ରୟୋଗ କରିଥାଏ, ସେପରି ସୁଚରିତାର ଅଭିବ୍ୟକ୍ତିରୁ ଅର୍ଥ ଖୋଜିବାରେ ମୋର ସମସ୍ତ କୁଶଳତା କ୍ଳାନ୍ତ ହୋଇଯାଇଛି ସିନା, ଊର୍ଦ୍ଧ୍ୱ ଦିଗେ ଅଗ୍ରସର ହେବାର ପଥ ମୁଁ କେବେହେଲେ ପାଇପାରିନି । ତଥାପି ତାର ଉପରେ ସ୍ୱତ୍ୱ ପ୍ରତିଷ୍ଠାର ଲୋଭ ସମ୍ବରଣ କରିବା କାହା ପକ୍ଷରେ ହେଲେ ସହଜ ହୋଇ ନଥାନ୍ତା । ତାର ଗତିଶୀଳ ଯୌବନର ଉଦ୍ଧତ ବିନମ୍ରତା, ଭାବ ନିବେଦନର କମନୀୟ ଆକ୍ରମଣଶୀଳତା ଆଉ ସର୍ବୋପରି ତାର

ପ୍ରାଣପ୍ରଚୁରତା ଜୀବନକୁ ଏପରି ଭାବେ ବିକଶିତ କରି ଧରିଥାଏ ଯେ ତାର ପ୍ରଭାବରୁ ମୁକ୍ତ ହେବା ମୁଣ୍ଡ୍‌ଖଲ ପ୍ରତୀତ ହୋଇଥାଏ । ସୁଚିତା ଥିଲି ଏକ ମଧୁର ସମ୍ବେଶନ ।

ସୁଚିତାକୁ କେନ୍ଦ୍ର କରି ଗୋଟିଏ କ୍ଷୁଦ୍ର ସମ୍ପ୍ରଦାୟ ଗଢ଼ି ଉଠିଥିଲା ଏକ ସମୟରେ; ପ୍ରାୟ କୋଡ଼ିଏ ବର୍ଷ ପୂର୍ବେ । ସାତଜଣ ପ୍ରତିଭାବାନ ଅନୁରକ୍ତ ଯୁବକଙ୍କର ସେ ଥିଲା ଅଧିଷ୍ଠାତ୍ରୀ ଦେବୀ । ଏଇ ମେଳରେ ମୁଁ କେବଳ ଥିଲି ଅପେକ୍ଷାକୃତ ସ୍ୱଳ୍ପଭାଷୀ, ଅତ୍ୟଧିକ ଅନୁରକ୍ତ ଓ ଅପ୍ରକାଶ୍ୟ ଭାବେ ପ୍ରେମପ୍ରବଣ । ପ୍ରତି ସନ୍ଧ୍ୟାରେ ଆମେ ତାର ଘରେ ମିଳିତ ହେଉଥାଉଁ । ନାରୀକୁ ପ୍ରଣୟିନୀ ଅପେକ୍ଷା ମହୀୟସୀ ବନ୍ଧୁ ଭାବେ ଗ୍ରହଣ କରିବାର ମୂଲ୍ୟ ଓ ଗୁରୁତ୍ୱ ଯେ ଅଧିକ, ସେ ବିଷୟରେ ଆମର ସଦା ଅସମ୍ପୂର୍ଣ୍ଣ, ଅନିବାର୍ଯ୍ୟ ଆଲୋଚନା ପ୍ରତ୍ୟହ ବେଶ୍ ପ୍ରକାଶକ, ଉତ୍ତେଜକ ତଥା ଉପଭୋଗ୍ୟ ହୋଇ ଉଠିଥାଏ । କେଉଁ ଅସତର୍କ ମୁହୂର୍ତ୍ତରେ କାହାର ଅଭିବ୍ୟକ୍ତିର ବେଗ ଯଦି ପ୍ରଣୟ ନିବେଦନର ମଣ୍ଡଳ ସ୍ପର୍ଶ କରି ଆସେ, ସୁଚିତା ତାର କୋମଳ ତଥା କଠିନ କଣ୍ଠରେ ସତର୍କବାଣୀ ଶୁଣାଇ ଦିଏ :

"ତୁମର ଯୁକ୍ତି ମୂଳ ବିଷୟରୁ ବିଚ୍ୟୁତ ହୋଇଯାଉଚି । ଦେହକୁ ଅତିକ୍ରମ କରିବାର ସାମର୍ଥ୍ୟ ଯଦି ନାହିଁ, ଅକାରଣ ଆତ୍ମପ୍ରବଞ୍ଚନା କରୁଚ କାହିଁକି ?"

ସୁଚିତା ଶପଥ ପାଠ କରାଏ । ଜଣେ ଜଣେ ଚିରକୁମାର ବ୍ରତ ଗ୍ରହଣ କରିବାର ଶପଥ ନେଇନ୍ତି । ମୋର କେତେ ବିନିଦ୍ର ରଜନୀର ପ୍ରଣୟ କବିତା ସୁଚିତାର ନିଷ୍ଠୁର କୁମାରୀତ୍ୱ ଅଭିମାନ ପଛରେ ଅପ୍ରକାଶ୍ୟ ରହିଯାଏ । କିନ୍ତୁ ଅନ୍ୟମାନଙ୍କ ଅଗୋଚରରେ ମୋର

କ୍ରମ ଅଧିକରୁ ଅଧିକତର ଭାବେ ନିବଦ୍ଧ ହୁଏ ସୁଚରିତାର ପ୍ରେମଲାଭ କାମନାରେ ।

ସୁଚରିତା ଘୂରୁଥାଏ ତା'ର କକ୍ଷରେ । ସାତଟି ଉପଗ୍ରହ ନିଜ ନିଜ କକ୍ଷରେ ଘୂରି ତାକୁ ପ୍ରତ୍ୟହ ପ୍ରଦକ୍ଷିଣ କରୁଥାନ୍ତି । ପ୍ରତ୍ୟେକର କକ୍ଷ ବେଗ ଓ କକ୍ଷ-ଆବେଗ ସ୍ୱତନ୍ତ୍ର । ମଧ୍ୟେ ମଧ୍ୟେ କାହାକାହା ପିଣ୍ଡରୁ ଉଲ୍କା ମଧ୍ୟ ଛିନ୍ନ ହୋଇ ଆସେ । ବୈଠକରେ କ୍ରମାଗତ ତିନିଦିନ ଅନୁପସ୍ଥିତ ରହିବା ପରେ ଚତୁର୍ଥ ଦିନ ସକାଳବେଳା ମୁଁ ରମେଶ ଉପରେ ଯାଇ ଚଢ଼ାଉ କଲି । ବହୁଷ୍ଟ୍ର, ପ୍ରଣୟ ଆତୁର ରମେଶ ହତାଶ କଣ୍ଠରେ ମନ୍ତବ୍ୟ କଲା :

"ତୁ ଯାହା ମନେକରୁ ପଛେ, ଏ ପରିବେଶ କିନ୍ତୁ ମତେ ବଡ଼ ଅସ୍ୱାଭାବିକ, ଅସାଧାରଣ ଆଉ ଅସହ୍ୟ ଲାଗିଲାଣି । ଗୋଟିଏ ପ୍ରଣୟ ପ୍ରତିମା ଉପରେ କ୍ଷୁଧିତ ଦୃଷ୍ଟି ଅଭିକ୍ଷେପ କରି ସାତଟି ହଂସ ପ୍ରଣୟୀ ଏଭଳି ଅନାସକ୍ତିର ଅଭିନୟ କରିବା ମତେ ବଡ଼ ଘୃଣ୍ୟ ବୋଧ ହେଲାଣି । ମହାଳା ବନ୍ଧୁ ନାମରେ ବାନ୍ଧବୀର ବନ୍ଦନା ଗାଇବା ମୁଁ ମାନସିକ ବ୍ୟଭିଚାର ବୋଲି ମନେକରେ । ଆମ ସାତଜଣ ଭିତରୁ ଜଣେ କାହାକୁ ହେଲେ ସୁଚରିତା ଯଦି ସ୍ୱାମୀ ପଦରେ ବରଣ କରନ୍ତା ତାହାହେଲେ ସମସ୍ତେ ସହଜ ଭାବେ ନିଃଶ୍ୱାସ ମାରିପାରନ୍ତେ ।"

ଏ ପ୍ରକାର ଉଦ୍‌ବେଳନ ଯେ ଦିନେ ଉତ୍ପାତ ଆକାର ଧାରଣ କରିବ, ମୋର ଶଙ୍କାର ସତ୍ୟତା ଧୀରେ ଧୀରେ ପ୍ରକଟ ହୋଉଥିଲା ।

## ( ୩ )

ଦୁଇ ବର୍ଷ ଭିତରେ ଆମର ଗୋଷ୍ଠୀ ବିଚ୍ଛିନ୍ନ ହୋଇଗଲା । କର୍ମକ୍ଷେତ୍ରର ଆହ୍ୱାନରେ ସମସ୍ତେ ସ୍ଥାନାନ୍ତରିତ ହେଲେ । ରହିଲୁ

କେବଳ ମୁଁ ଆଉ ସୁଚରିତା । ନୂଆ ନୂଆ ଅନୁରାଗୀଙ୍କୁ ନେଇ ସୁଚରିତା ପୁଣି ତାର ସଂପ୍ରଦାୟ ଗଢ଼ି ପାରିଥାନ୍ତା । କିନ୍ତୁ ସେ ଦଗରେ ଆଉ ତାର ଆଗ୍ରହ ଦେଖିଲିନି । ସ୍ଥାନାନ୍ତରିତ ବ୍ରତାଗ୍ରହୀମାନଙ୍କୁ ପ୍ରତିଦିନ ଲମ୍ବା ଲମ୍ବା ଚିଠି ଲେଖିବା ହେଲା ତାର ଏକମାତ୍ର କର୍ମାନୁସରଣ । ପ୍ରତି ସନ୍ଧ୍ୟାରେ ମୁଁ ତାର ପାଖରେ ଯାଇ କିଛି ସମୟ ବସେ । ମୋର ଏତେଦିନର ସଯତ୍ନପାଳିତ ବାସନା ପ୍ରକାଶ କରିଦେବା ପାଇଁ ବେଳେ ବେଳେ ନିର୍ଦ୍ଦିଷ୍ଟ ଭାବେ ପ୍ରରୋଚିତ ହେଇଥାଏ । କହି-ଦେବାକୁ ଇଚ୍ଛାହୁଏ ଯେ ଦେହକୁ ଅତିକ୍ରମ କରିବା ଲାଗି ସେ ଯେଉଁ ସାଧନା କରୁଛି ବୋଲି ସନ୍ତୋଷ ପାଉଛି ତାହା ଦେହକୁ ସନ୍ତୋଷ ଦେବାର ଏକ ପରୋକ୍ଷ ପ୍ରଣାଳୀ କେବଳ । ପାଖରେ ଖାଦ୍ୟ ଥୁଆ ହେଇଥିଲା ବେଳେ କ୍ଷୁଧାର ରୁଚି ଜାଣିବା ଲୋଭରେ ଅନ୍ତରକୁ ତିକ୍ତ କରିବା କୌଣସି ମତେ ବାଞ୍ଛନୀୟ ନୁହେ । ପଦେ ମୁଦ୍ଧା ମୁହଁ ଖୋଲି କହିପାରେନି । କେବେ ଅବା କୌଣସି ପ୍ରସଙ୍ଗ କ୍ରମରେ, ଖୁବ୍ ସତର୍କ ଭାବରେ, ସାହସ ସଞ୍ଚୟ କରି ମୁଁ ଯଦି ମୋର ମନୋଗତ ଭାବର କ୍ଷୀଣ ସୂଚନା ଦେବା ଉପକ୍ରମ କରେ, ସୁଚରିତାର ଅତିକାମ୍ୟ, ଅନୁଦାର ଅଧରରେ ଧାରେ ଅର୍ଥପୂର୍ଣ୍ଣ ମନ୍ଦହାସ କେବଳ ବହିଯାଏ । ସେଇ ଧାରକ ହସ ନିବିଡ଼ ଏକ ଉଷ୍ମ ଚୁମ୍ବନରେ ସଞ୍ଜୀବନୀ ସୁଧା ତୁଲ୍ୟ ପାନ କରିବା ପାଇଁ ମୁଁ ଯେ ଜୀବନକୁ ଯେ କେଉଁ ପ୍ରକାର ଦୁଃସାହସିକତାରେ ବିପନ୍ନ କରିପାରିଥାନ୍ତି, ସୁଚରିତା କେବେ ବୁଝିବାର ଆଗ୍ରହ କରିନି; ହୁଏତ ବୁଝି ମୁଦ୍ଧା ବୁଝି ପାରିନି । ମୋର ପ୍ରଥମ ଯୌବନର କାନ୍ତ ଓ କାନ୍ତ ଏକ ଅପରିହାର୍ଯ୍ୟ ଭ୍ରାନ୍ତିର ଗ୍ଲାନି ଭିତରେ ମ୍ଳାନ ହେଇ ଯାଉଥିଲା ।

ଜଣେ ଜଣେ କରି ଭ୍ରାତୃଗୃହୀମାନେ ଗାର୍ହସ୍ଥ୍ୟ ଧର୍ମ ଅବଲମ୍ବନ କଲେ । ଏସବୁ ସମ୍ବାଦ ଅପ୍ରତ୍ୟାଶିତ ଭାବେ ଆସି ସୁଚନାର ବକ୍ଷ ବିଦୀର୍ଣ୍ଣ କରେ । ଦୁଇ ତିନି ଦିନ ପର୍ଯ୍ୟନ୍ତ ସେ ଏକପ୍ରକାର ଅସ୍ୱାଭାବିକ ମାନସିକ ସ୍ଥିତିରେ କଲବଲ ହୁଏ । ଇମିତି ଦିନରେ ମୁଁ ତାର ପାଖରୁ ଦୂରେଇ ରହିଯାଏ । ସେ ଅବସ୍ଥାରେ ସାନ୍ତ୍ୱନାକୁ ସେ ବ୍ୟଙ୍ଗ ଭାବରେ ଗ୍ରହଣ କରନ୍ତା । ଅଧିକନ୍ତୁ, ତାର ଉପରେ ପ୍ରକୃତିର ଏ ପ୍ରତିଶୋଧରୁ ମୁଁ ଏକପ୍ରକାର ବିଷାଦିତ ଆନନ୍ଦ ଉପଭୋଗ କରିଥାଏ । ତିନିଟି ବର୍ଷ ଭିତରେ ଆମେ ଦୁଇଜଣ ବିଷୁବତ୍ ଭ୍ରାତୃଗୃହୀ କେବଳ ଅବଶିଷ୍ଟ ରହିଗଲୁ—ଜଣେ ପ୍ରୀତି ବିମୁଖୀ; ଆଉ ଜଣେ ପ୍ରୀତି ନଷ୍ଟ ।

ଜୀବନରେ ସାହିତ୍ୟ ଓ ରାଜନୀତିର ସମନ୍ୱୟ ଆଣିବା ସାଧନାରେ, ଉଭୟର ସଂଘର୍ଷରେ ଥରେ ଥରେ କ୍ଷତବିକ୍ଷତ ହୋଇ, ଆଶ୍ରୟ, ଯତ୍ନ ଓ ପ୍ରେମ ଲୋଭରେ ମୁଁ ସୁଚନାର ଶରଣାପନ୍ନ ହୋଇଥାଏ । କିନ୍ତୁ ତାର ଉଜ୍ଜ୍ୱଳ ଆଖିର କରୁଣ ଉଦାସୀନତା ମୋର ଆଘାତ ଉପରେ ଅଙ୍କ ଲେପନ କରେ; ବେଦନାରେ ବ୍ୟଞ୍ଜନା ସଂଯୋଗ କରେ ।

ସୁଚନା ଦିନେ ପ୍ରକାଶ କଲା, ସେ ସପ୍ତାହକ ଭିତରେ ବ୍ରହ୍ମପୁର ଘୁଞ୍ଚିଗଲି କଟକରେ ଗୃହକର୍ମ କରିବା ପାଇଁ । ମୁଁ ବିସ୍ମିତ କିମ୍ବା ଦୁଃଖିତ ହେଲିନି । ମନେମନେ ମୁଁ ବି ହୁଏତ ଚାହୁଁଥିଲି ତାର ସଂସର୍ଗରୁ ଦୂରରେ ରହିବା ପାଇଁ । ସମୁଦ୍ର ତୀରରେ କାହାର ତୃଷା କେବେ ଶାନ୍ତ ହୁଏନି । ମତେ ନୀରବ ରହିବା ଦେଖି ସୁଚନା କହିଲା,

"କେତେଟା ଦିନ ତୁମେ ହୁଏତ ବଡ଼ ଏକାନ୍ତ ବୋଧ କରିବ । କିନ୍ତୁ ମୁଁ ନିୟମିତ ଚିଠି ଲେଖିବି ।"

ସେ ବ୍ୟାଧିରେ ସଂକ୍ରମିତ ହେବାର ବାସନା ମୋର ନଥିଲା । ସୂଚନା ସ୍ୱରୂପ କହିଲି, "କଟକ ତ ଆଉ କାଶ୍ମୀର ନୁହେଁ । ତମେ ଚାହିଁଲେ ପ୍ରତି ଏକାନ୍ତର ରବିବାରରେ ଆମର ସାକ୍ଷାତ ହୋଇ ପାରିବ । ମାସରେ ଅନ୍ତତଃ ଦୁଇଥର କଟକ ଯିବା ମୋର ତ ଲାଗିଛି ।"

ସୁଚିତ୍ରା ଅତିଶୟ ସଂବେଦୀ । କହିଲା, "ଚିଠିରେ ଆମେ ନିଜକୁ ଭଲଭାବେ ପ୍ରକାଶ କରିପାରିବା ବୋଲି ମୋର ବିଶ୍ୱାସ । ବିକାଶ ବି ହୋଇପାରେ ।"

ମୋର ଅଭିମାନ ପ୍ରରୋଚନା ପାଇଥିଲା— "ପାଞ୍ଚବର୍ଷ କାଳ ପ୍ରତିଦିନ ଘଣ୍ଟା ଘଣ୍ଟା ଧରି ଏକାଠି କଥାହେବା ପରେ ଆମର ଆଉ କିଛି ଅକୁହା ରହିଯାଇଛି ବୋଲି ମୁଁ ଭାବିପାରୁନି । ଯଦି କିଛି ରହିଯାଇଥାଏ, ତାହା ଆଉ ପ୍ରକାଶ ନ ପାଇବା ଭଲ । ବିକାଶ କଥା ଯାହା କହୁଚ, ତାହା ବିସମ୍ବାଦ ଭିତରେ ସମ୍ଭବ ହୁଏନି ।" ସୁଚିତ୍ରା ମୁହଁର ଭାବ ବଦଳି ଗଲା । ଗୋଟାଏ ନିର୍ଦ୍ଦିଷ୍ଟ ଜାତିର ସୁରା ଅପେକ୍ଷା 'କକ୍‌ଟେଲ୍‌'ରୁ ଯେ ରକମ ସ୍ୱତନ୍ତ୍ର ମାଦକତା ମିଳିଥାଏ, ସୁଚିତ୍ରା ମୁହଁରେ, ପାଞ୍ଚ ବର୍ଷରେ ଯାହା କେବେ ଦେଖି ନଥିଲି, ଏକ ଅଭିନବ ସୌନ୍ଦର୍ଯ୍ୟର ପ୍ରକାଶ ଦେଖିବାକୁ ପାଇଲି । ଗୋଟାଏ ଶବ୍ଦରେ ତାକୁ ଅଭିବ୍ୟକ୍ତ ଦେବା ସମ୍ଭବ ନୁହେଁ । ଟିକିଏ ସମ୍ବେଦନା—ଟିକିଏ ସଲଜ୍ଜତା, ଟିକିଏ ପ୍ରେମ—ଟିକିଏ ତ୍ରାସ, ଟିକିଏ ଉତ୍କଣ୍ଠା—ଟିକିଏ ଉଦାରତା, ଟିକିଏ ଅଭିମାନ—ଟିକିଏ ଅଶ୍ରୁସଜଳତା ମିଶାଇ ଗୋଟାଏ ଭାବ ସୃଷ୍ଟି କଲେ ଯେପରି ହେବ, ସେପରି । ସେ ଛବି ଏବେ ସୁଦ୍ଧା ମୋର ମନରେ ସଦ୍ୟ, ସମୁଜ୍ଜ୍ୱଳ ରହିଛି । କିଛି ସମୟ ନୀରବ ରହି ଅବନତ ମୁଖରେ ସୁଚିତ୍ରା କହିଲା,

"ମତେ ବିବାହ କରି ତମେ କଣ ସତରେ ସୁଖୀ ହୋଇଥାନ୍ତ ?" ତାର ଭାଷାରେ ନଥିଲା ନିଶ୍ଚିତ ସମ୍ଭାବନା; ଥିଲା ଏକ ଅନିଶ୍ଚିତ ପ୍ରଶ୍ନ । ତଥାପି ଆଶା ପ୍ରକାଶ କରି କହିଲି,

"ତୁମ ବିନା ଅନ୍ୟ କାହାକୁ ନେଇ ଜୀବନର ସୁଖ ଦୁଃଖ ବିଷୟ ବିଚାର କରିବା ପ୍ରତି ମୁଁ କେବେ ଆଗ୍ରହୀ ହୋଇନି । ତୁମ ପ୍ରତି ମୋର ଯେଉଁ ପ୍ରବଣତା ଦିନେ ଜନ୍ମିଥିଲା ଏବେ ଦିନର ଘନିଷ୍ଠ ସମ୍ପର୍କରେ ତାହା ଏକ ନିଶ୍ଚିତ ଉଦ୍ଦେଶ୍ୟରେ ପରିଣତ ହୋଇଲାଣି । ବିବାହ ଦ୍ୱାରା ମୁଁ ତାର ମହତ୍ତ୍ୱକୁ ସମ୍ମାନ ଦେବା କାମନା କରେ ।"

ପୁଣି କେତେ ମିନିଟ୍ ଉଦ୍‌ବେଗଭରା ନୀରବତା । ମୁଁ ମୋର ହୃତ୍‌ପିଣ୍ଡର ସ୍ପନ୍ଦନ ପର୍ଯ୍ୟନ୍ତ ଶୁଣି ପାରୁଥିଲି । କମ୍ପିତ ଅନିଶ୍ଚିତ କଣ୍ଠରେ ସୁଚରିତା କହିଲା,

"ତୁମର ସ୍ତ୍ରୀ ନ ହୋଇ ଅନ୍ୟ କୌଣସି ଭାବରେ କଣ ମୁଁ ତୁମ ସଙ୍ଗେ ସମ୍ପର୍କ ରଖିପାରିବିନି ? ମତେ ତୁମର ବନ୍ଧୁ ଭାବରେ ଗ୍ରହଣ କରିପାର ।"

ତାର ପ୍ରତ୍ୟେକଟି ଶବ୍ଦ ମତେ ଅସାଧାରଣ ଭାବେ ସ୍ପଷ୍ଟ ବୋଧ ହୋଇଥିଲା । ନଗ୍ନ ନିର୍ଦ୍ଦିଷ୍ଟତା ଦେଇ କହିଲି,

"ସେ ସବୁ ଉପନ୍ୟାସର ଭାଷା । ମୋ ପାଖରେ ତାର କୌଣସି ନୂତନତ୍ୱ ନାହିଁ । ପ୍ରେମ ବିନା ତୁମର ଅନ୍ୟ କୌଣସି ଆତ୍ମୀୟତାରେ ମୁଁ ତୃପ୍ତ ହେବିନି । ତଥାପି ମୁଁ ତୁମର ପ୍ରେମ ଭିକ୍ଷା କରୁନି । ତୁମର ଅନ୍ତରକୁ ଯଦି ସ୍ପର୍ଶ କରି ନପାରିଛି, ତୁମ ଦାନର କଙ୍ଗାଳ ମୁଁ ନୁହେଁ । ତୁମେ ଯଦି ଆହୁରି ସମୟ ଚାହୁଁଛ, ମୋର ସମଗ୍ର ଜୀବନ ଢାଳି ତୁମ ହାତରେ ଟେକି ଦେଉଛି ।"

ସୁଚିତ୍ରା ମୁଣ୍ଡ ପୋତି ବସିଥିଲା । ଉତ୍ତେଜନାର ବେଗରେ, ସୌଜନ୍ୟର ଅପେକ୍ଷା ନରଖି, ବାହାର ଆସିଲି ।

(୪)

ଦୀର୍ଘ ପନ୍ଦର ବର୍ଷର ଏକ ବିଚିତ୍ର କାହାଣୀ ଘଟଣା କ୍ରମରେ ବିବୃତ କରିବା ବର୍ତ୍ତମାନର ପରିସର ଭିତରେ ସମ୍ଭବ ନୁହେ । ବିଭିନ୍ନ ଅବସରରେ, ବିଭିନ୍ନ ମାନସିକ ସ୍ଥିତିରେ ସେ ଯେଉଁ ସବୁ ଚିଠି ମୋର ପାଖକୁ ଲେଖିଥିଲା, ସେଗୁଡ଼ିକ ବହି ଆକାରରେ ପ୍ରକାଶ କରିବାର ସୁଯୋଗ କେବେ ପାଇଲେ ସୁଚିତ୍ରାର ଜୀବନ ପରିଚୟ ମିଳିପାରିବ ।

ସେ ଯାହା ହେଉ, ସେ କଟକ ଛିଡ଼ା ପରେ ଆମ ଭିତରେ ଚିଠିପତ୍ରର ବିନିମୟ ପ୍ରାୟ ନିୟମିତ ଭାବେ ଚାଲିଥିଲା ଯଦିଓ, ତଥାପି ବର୍ଷରେ ପାଞ୍ଚ ସାତ ଥର ଯାହା ଦେଖା ହେଉଥିଲା ତିନି ଚାରି ବର୍ଷ ପରେ ଉଭୟ ପକ୍ଷରୁ ବିଶେଷ କରି ସୁଚିତ୍ରା ପକ୍ଷରୁ ଆଉ ସେଥିଲାଗି ଆଗ୍ରହ ରହିଲାନି । ଅକସ୍ମାତ୍ ଯଦି କେଉଁଠି ଦେଖା ହୋଇଯାଇଛି, ଉଭୟେ ଅପ୍ରତିଭ ହୋଇଛୁ । ତାର କେତୋଟି ଚିଠିର କିଛି କିଛି ଅଂଶ ଉଦ୍ଧାର କରୁଛି :

୨୬, ସେପ୍ଟେମ୍ବର, ୧୯୪୬—

"......ଗତ କାଲି ତୁମେ ଛିଡ଼ା ପରେ ମନେହେଲା, ତୁମେ ଆସି ନଥିଲେ ବରଂ ଭଲ ହୋଇଥାନ୍ତା । ତୁମେ ଦୂରରେ ଥିଲେ ମୁଁ ତୁମ କଥା ଯେତେ ଭାବୁଛି, ତୁମକୁ ନେଇ ଯେତେ ପ୍ରକାର କଳ୍ପନା ଗଢ଼ୁଛି, ତୁମକୁ ଆଖି ଆଗରେ ଦେଖିଲେ ମନେ ସବୁକିଛି ଶୂନ୍ୟ

ବୋଧ ହେଉଛି । କି ଏକପ୍ରକାର ଅଜ୍ଞାତ ଆଶଂକା ମୋର ଆତ୍ମା ଭିତରକୁ ଭେଦ ଯାଉଛି । ବହୁତ କଟୁକଥା କହିପକାଇଲି, ନୁହେଁ ? ମୋ ରାଣ, ତୁମେ ଅନ୍ୟ କିଛି ଭାବିବନି । ତୁମ ପ୍ରତି ରୁଷ୍ଟ ହେବା ବିନା ମୋର ଆତ୍ମରକ୍ଷାର ଅନ୍ୟ ଉପାୟ ନଥିଲା......।"

ଏ ଆତ୍ମରକ୍ଷା କଣ ମୋର ପ୍ରେମ ମୁହଁରୁ ! ଏ ଚିଠିର ଉତ୍ତରରେ ପ୍ରତିରକ୍ଷା ସ୍ୱରୂପ ମୁଁ ଜଣେ ଇଂରେଜ କବିଙ୍କ ସାହାଯ୍ୟ ନେଇଥିଲି :

"Our harsh tongues of today
would run in tears
Back to this buried Now
become the past.
In the cool shadows
we'd unclasp our fears
Transformed love at last."

୧୧, ଏପ୍ରିଲ, ୧୯୫୧—

"......ତୁମର 'ବଂଶୀ ଓ ବଜଣୀ' ଗଳ୍ପ ସଗ୍ରହଟି କାଣି ଆଣି ପଢ଼ିଲି । କେତୋଟି ଗଳ୍ପ ଅତି ଚମତ୍କାର ହୋଇଛି । ପୂର୍ବପରି ଏ ବହିଟି ମଧ୍ୟ ମତେ ଉପହାର ଦେଇଥିଲେ ମୁଁ ସତରେ ପଢ଼ିବାରେ ଆନନ୍ଦ ପାଆନ୍ତିନି । ତୁମ ଅଜ୍ଞାତରେ ତୁମର ବହିଟି ପାଇବାରେ ହିଁ ମୋର ଆନନ୍ଦ । ସତ କହିଲ, 'ରୂପ ଓ ଅରୂପ' ଗଳ୍ପଟିର 'ନନ୍ଦା' ଚରିତ୍ରରେ ତୁମେ ମତେ ଚିତ୍ରଣ କରିନ ? କେତେ କହିଲେ ମୁଁ ମାନିବି କାହିଁକି ? ଯେତେ ଚେଷ୍ଟା କଲେ ହେଲେ ମତେ ତୁମ ଅନ୍ତର ଭିତରୁ ଦୂର କରି ପାରିବନି । ସତ କହ, ତୁମେ ସେତେ

ନିଷ୍ଠୁର କେବେ ହେବ ନାହିଁ ତ ? ତୁମର ଆଶ୍ରୟ ହରାଇଲେ ମୁଁ ବଞ୍ଚିବି କିମିତ ?......"

୧୯, ଜୁଲାଇ, ୧୯୫୩—

"......ତୁମେ ଗତ ରାତରେ ଆସିଥିଲ । ଏତକ ବେସରମ ମୁଁ କିମିତ ହୋଇ ପାରିଲି କେଜାଣି ! କିଏ କହୁଚି ଆଉ କିଏ ନ କହୁଚି ? ଇମିତ ଦୁଷ୍ଟ ହସ ତୁମେ କୋଉଠୁ ଶିଖିଲଣି ? ଇସ୍, ପଣତ ଟାଣୁଥିଲ କୋଉଥିପାଇଁ ଶୁଣେ ।

"ବଳକା ରାତଟାକ ଆଉ ନିଦ ହୋଇଲା । ଖୁବ୍ ପ୍ରାଣଭରି କାନ୍ଦିଲି । ମଝିରେ ମଝିରେ ଇମିତ ସଦା କନ୍ଦେଇ ପାରୁଥିବ, ମୋର ଆଉ କିଛି ଦରକାର ନାହିଁ ।......"

୧୭, ମଇ, ୧୯୫୪—

"......ଆଜ ତୁମର ଜନ୍ମତିଥି । କଲେଜ ଯାଇନି । ସାରା-ଦିନ କେବଳ ତୁମ କଥା ବସି ଭାବୁଚି । ଜୀବନ ଥିବାଯାଏଁ ତୁମର ଜନ୍ମତିଥିଟି କେବଳ ମୋର ବର୍ଷକର ଏକମାତ୍ର ଉତ୍ସବ ଦିନ ହୋଇ ରହିବ । ତୁମର ପ୍ରଥମ ପ୍ରଣୟ କାଳର ଯେଉଁ ଅପ୍ରକାଶିତ ପ୍ରେମ କବିତା ଗୁଡ଼ିକ ସାତବର୍ଷ ତଳେ ମୋ ପାଖକୁ ପଠାଇ ଦେଇଥିଲ, ସେଥିରୁ ଗୋଟିଏ ଆଜ ସ୍ୱର ଦେଇ ଗାଇଲି । ବ୍ରହ୍ମପୁର ଛାଡିବା ପରଠାରୁ ଏଇ ପ୍ରଥମ ଗୀତ ଆଜ ଗାଇଚି । ଗାଉ ଗାଉ ମନେହେଲା, ତମେ ଆସି ପାଖରେ ମୋର ବସି ଯାଇଚ । ବଡ଼ ଦୁଷ୍ଟ ହେଲଣି ଦେଖୁଚି । ମୋର ଅଭ୍ୟର୍ଥନା ଜଣାଇଲି ନୀରବ ଅଶ୍ରୁରେ......।"

୩୧, ଡିସମ୍ବର, ୧୯୫୭—

"ମୋର ନିଜସ୍ୱ ପ୍ରିୟତମ,

ଏଇ ସମ୍ବୋଧନ କରିବାରୁ ମତେ ଆଉ କିଏ ବଞ୍ଚିତ କରି ପାରିବନି। ମୋର ପ୍ରତ୍ୟେକ କାର୍ଯ୍ୟରେ ମୁଁ ଏଥର ତୁମର ସତ୍ତା ଅନୁଭବ କରିପାରୁଚି। ଏ ଆନନ୍ଦ ବ୍ୟକ୍ତ କରିବା ଲାଗି ମୋର ଭାଷା ନାହିଁ। ନଥିବାହିଁ ଭଲ।

"ତୁମ ପଦ ତଳେ ପଡୁଚି, ମତେ ଦେଖି ଆସିବା ଲାଗି ଜଗର କରନି। ମୋର ସ୍ୱାସ୍ଥ୍ୟ ଖୁବ୍ ଭଲ ଅଛି। ତୁମେ ଭୁଲ୍ ଖବର ପାଇଚ ନିଶ୍ଚୟ। ଆଜି କାଲି ବାହାର କର୍ଣ୍ଣାଳରେ ଆଉ ବିଶେଷ ଭାଗ ନେଇ ପାରୁନି। ସମୟ କୋଉଠୁ ପାଇବ? ତୁମର ତାଗିଦା କମ୍ ନୁହେଁ। ତୁମ ଫଟୋମାସ ତୁଲାଉ ତୁଲାଉ ମୁଁ ଅଣନିଶ୍ୱାସୀ ହୋଇ ଉଠୁଚି।

"ଆଚ୍ଛା, ମୁଁ ଯଦି ମରିଯାଏ ତୁମେ ଖୁବ୍ ଦୁଃଖ କରିବ, ନୁହେଁ? ସତ କହୁଚି, ବଞ୍ଚିବା ଲାଗି ମୋର ଆଉ ବିଶେଷ ଇଚ୍ଛା ନାହିଁ। ତୁମଆରୁ ପାଇବା ଲାଗି କଣ ଆଉ ବାକି ରହିଲା! ଏ ସଫଳତା ବେଳେ ବେଳେ ମତେ ଶ୍ୱାସରୁଦ୍ଧ କରି ଦେଉଚି। ତୁମକୁ ବହୁତ କଷ୍ଟ ଦେଇଚି। ତା କରିନଥିଲେ ତୁମକୁ ଏପରି ଭାବେ ପାଇ ପାରନ୍ତି ବା କିପରି?…. ."

( ୫ )

ସୁଚନାର ମୃତ୍ୟୁରେ ମୁଁ ବିସ୍ମିତ ହୋଇନି। ବିସ୍ମିତ ହୋଇଚି ନିଜର ଜୀବନ ନେଇ।

# ବଞ୍ଚିବାର ବିନ୍ୟାସ

ବ୍ରହ୍ମପୁରରେ ଶଶିଭୂଷଣ ରଥ ରୋଡ଼ରୁ ନିରଞ୍ଜନ ପଟ୍ଟନାୟକ ସାହି ଯେଉଁଠି ଶାଖେଇ ଯାଇଛି, ସେଇ ଛକ ଉପରେ ଦକ୍ଷିଣ ଦିଗକୁ ମୁହଁ କରି ଆନ୍ଧ୍ର ଶୈଳୀର ଗୋଟିଏ ପୁରାତନ ଟିକର ଘର ଅଛି । ଘରଟିର ଆୟତନ ଓ ଆକାରରୁ ଅନୁମାନ କରି ହେବ ଯେ ଦିନେ ହୁଏତ କୌଣସି ଏକ ବିଶାଳ, ସମ୍ଭ୍ରାନ୍ତ ପରିବାରକୁ ଏହା ଆଶ୍ରୟ ଦେଉଥିଲା । ବ୍ରହ୍ମପୁରର ପୌର ଜୀବନ ପ୍ରତି, ସଂପ୍ରତି ବିସ୍ମୃତ, ଏଇ ପରିବାରର ଅବଦାନ ନେଇ ନଗରୀର କୌଣସି ଗର୍ବର-ଯୋଗ୍ୟ ସାମାଜିକ ମହଲରେ କେବେ ଆଲୋଚନା ହେବା ମୁଁ ଶୁଣିନି । ତେବେ, ସେ ବିଷୟରେ ବିଶେଷ ଚିନ୍ତିତ ହେବାର ଅର୍ଥ ମୁଁ ଦେଖୁନି କାରଣ ଏଇ ତଥାକଥିତ ସମ୍ଭ୍ରାନ୍ତ ପରିବାରମାନେ ଅଧିକାଂଶ କ୍ଷେତ୍ରରେ ସାମାଜିକ ଜୀବନର ଅନିଷ୍ଟ କେବଳ ଘଟାଇ, ତାହାର ଶୋଚନାର ଅପେକ୍ଷା ନରଖି, କାଳ ଗର୍ଭରେ ବିଲୀନ ହୋଇ ଯାଇଥାନ୍ତି ।

ପ୍ରାଚୀନ କଳିଙ୍ଗ ସଙ୍ଗେ ପ୍ରାଚୀନ ଆନ୍ଧ୍ରର ସଂପର୍କ ଯାହା ହେଉ ଆଜ ନା କାହିଁକି, ଆଧୁନିକ ତଥା ଅବିଭକ୍ତ ଗଞ୍ଜାମ ଭିତରକୁ କିନ୍ତୁ ଆନ୍ଧ୍ର ପ୍ରବ୍ରଜନ ଓଡ଼ିଆ ଇତିହାସର ଏପରି ଏକ ଦୁଃସମୟରେ ଏବଂ ଏପରି ଅବାଞ୍ଛିତ ଭାବରେ ସଙ୍ଗଠିତ ହେଲା, ଫଳରେ ଗତ ଶତ ବର୍ଷ ଭିତରେ ଉଭୟ ଜାତିର ପାରସ୍ପରିକ ସଂପର୍କରେ ବହୁଧା ଅପ୍ରୀତିକର ସ୍ମୃତି କେବଳ ଜଡ଼ିତ ରହିଛି । ସେ କାଳର ଶାସନ ଓ ବ୍ୟବସାୟ କ୍ଷେତ୍ରରେ ଆନ୍ଧ୍ର ଆଧିପତ୍ୟ ପ୍ରବଳ ଥିଲେ ମଧ୍ୟ ଗଞ୍ଜାମର ସାଂସ୍କୃତିକ ଜୀବନକୁ ତାହା ପ୍ରଭାବିତ କରି ପାରିଲାନି । ସମୁଦ୍ର ଉପକୂଳରୁ ପ୍ରାୟ ଦଶ ମାଇଲ ଦୂରତା ଭିତରେ ଆନ୍ଧ୍ର ପ୍ରଭାବ ସୀମିତ ରହିଗଲା । ସାମନ୍ତବାଦୀ ଯୁଗର ଏଇ ତିକ୍ତତା ଆଜିର କାଳରେ ମଧ୍ୟ ଉଭୟ ଜାତି ମଧ୍ୟରେ ବେଳେ ବେଳେ ଅତି କ୍ଲେଶକର ଭାବେ ଆତ୍ମ ପ୍ରକାଶ କରି ବ୍ରହ୍ମପୁର ପୌର ଜୀବନର ସୌଷ୍ଠବ ହାନି ଘଟାଉଛି ।

ସେ ଯାହା ହେଉ, ଏ ଯେଉଁ ଘରଟିକୁ କ୍ଷେତ୍ର କରି ଏଇ କାହାଣୀ ଉନ୍ମୋଚିତ ହେଉଛି, ବର୍ତ୍ତମାନ ତାର ମାଲିକାଣୀ ଜଣେ ବର୍ଷୀୟସୀ ଆନ୍ଧ୍ର ବ୍ରାହ୍ମଣ ବିଧବା । ନାମ ମୁଁ ଜାଣିନି; ଜାଣିବାର ଆବଶ୍ୟକତା କେବେ ଉପୁଜିନି । ଘରର ବାହାର ପଟକୁ, ମଝି ଅଗଣା ବାମ ପାର୍ଶ୍ୱର ତିନୋଟି ବଖରାରେ ବୁଢ଼ୀ ତାର ନାତୁଣୀକୁ ନେଇ ରହେ । ଆଉ ସାତଟି ବଖରାରେ ପାଞ୍ଚ ଜଣ ଭଡ଼ାଟିଆ ରହୁଚନ୍ତି । ଏଥିରୁ ଦୁଇଟି ବଖରା, ମାସିକ ପଚାଶ ଟଙ୍କା ଭଡ଼ାରେ, ମୁଁ ଅକ୍ତିଆର କରିଚି । ଆଉ ଦୁଇଟି ବଖରାରେ ରହନ୍ତି 'ଆଧୁନିକ ପ୍ରେସ୍' ମେନେଜର ଗୋପୀନାଥ ବାବୁ । ଡାହାଣ ପଟର ତିନୋଟି ବଖରାରେ ଶିକ୍ଷକ ଶଙ୍କର ବାବୁ, ହୋମିଓପେଥି ଡାକ୍ତର ମୁକୁନ୍ଦ ବାବୁ ଓ ବିଭୂତି ବାବୁ ରହୁଚନ୍ତି । ମଝି ଅଗଣା ପାରି ହେଇ, ବହୁ ଦିନରୁ

ଅବ୍ୟବହାର୍ଯ୍ୟ, ସେରେଷୋଇଶାଳାର ପିଣ୍ଡା ଦେଇ ବାହାର କୂଅ ଓ ପାଇଖାନା ବ୍ୟବହାର କରିପିବା ସୁବିଧା ମୋର ଓ ଗୋପୀନାଥ ବାବୁଙ୍କର କେବଳ ରହିଛି । ଘରର ପାଚେରୀ ଓ ଘର ମଝିର ସେଇ ବାଟଟିରେ ଅନ୍ୟ ତିନି ଜଣ ବାବୁଙ୍କ ଯିବା ଆସିବା କରୁଥାନ୍ତି । ପରନ୍ତୁ ସେରେଷୋଇଶାଳ ଭିତରେ ବୁଢ଼ୀ ନାନାବିଧ ଭଙ୍ଗା, ଅଲୋଡ଼ା ବସ୍ତୁଗୁଡ଼ି ଦ୍ରବ୍ୟ ଜମା କରିଛି ।

ଏଇ ଘରେ ତିନି ବର୍ଷ ରହିବା ପରେ ମଧ୍ୟ ଦୁଇଟି ବିଷୟରେ ମୁଁ ଏ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଅଜ୍ଞାନ : ବିଭୂତି ବାବୁଙ୍କ ପେଶା ଓ ବୁଢ଼ୀର ପରିବାର ବର୍ଗ । ଏଇ ତିନି ବର୍ଷ ଭିତରେ ବୁଢ଼ୀ ପାଖକୁ ତାର କେହି ଆତ୍ମୀୟ ସ୍ୱଜନ କେବେ ଆସି ନାହାନ୍ତି କିମ୍ବା ବୁଢ଼ୀ କେବେ କାହା କଥା ଉଲ୍ଲେଖ କରିନି । ଏଥିରୁ ମୁଁ ଅନୁମାନ କରୁଛି, କେବଳ ଏଇ ନାତୁଣୀଟି ହୁଏତ ବୁଢ଼ୀର ଇହକାଳର ଏକମାତ୍ର ସମ୍ପର୍କ ଅବଶେଷ ରହିଯାଇଛି । ବିଭୂତି ବାବୁ କଣ କରନ୍ତି ବୋଲି ପ୍ରଶ୍ନ ନ କରି କଣ ନ କରନ୍ତି ବୋଲି ବିଚାର କରିବା ଅଧିକ ସମୀଚୀନ ହେବ । ସାହିତ୍ୟ, ସାମୁଦ୍ରିକ, ପୁରାଣ, ମୂର୍ତ୍ତିତତ୍ତ୍ୱ, ରାସଲୀଳା, ରାଜନୀତି —ସବୁ କିଛି ବିଷୟ ନେଇ ସେ ଏପରି ନିବିଷ୍ଟ ତଥା ଗମ୍ଭୀର ଭାବେ ଆଲୋଚନା କରିଥାନ୍ତି, ଯେଥିରୁ ଅନୁମିତ ହେବ, ସେ ଯେପରି କୌଣସି ସ୍ୱୀକୃତ ଅନୁଷ୍ଠାନର ଅଧିକାରପ୍ରାପ୍ତ ପ୍ରତିନିଧି ଭାବରେ ମତବ୍ୟକ୍ତ କରୁଛନ୍ତି । ତାଙ୍କର ଏ ପ୍ରକାର ନିବିଷ୍ଟ ଆଲୋଚନା ଶୁଣି, ନାନା ବିଷୟରେ ତାଙ୍କର ନିରତ ବ୍ୟସ୍ତତା ଦେଖି, ସୌଜନ୍ୟ ଓ ସାମାଜିକତା ଦୃଷ୍ଟିରୁ, ତାଙ୍କର ନିର୍ଦ୍ଦିଷ୍ଟ କର୍ମକ୍ଷେତ୍ର ଓ ପାରିଶ୍ରମିକ ସମ୍ପର୍କରେ ପ୍ରଶ୍ନ କରିବା ସଙ୍ଗତ ହୁଅନ୍ତା ବୋଲି ମୁଁ କେବେ ମନେ କରିନି । ବିଭୂତି ବାବୁ ନିୟମିତ ଭଡ଼ା ଟଙ୍କା ଦେଉନ୍ତିନି ବୋଲି ବୁଢ଼ୀ ମତେ ବହୁବାର ତାଙ୍କର ମାସିକ ରୋଜଗାର ସମ୍ପର୍କରେ ପ୍ରଶ୍ନ

କରିଥାଏ । ବୁଡ଼ୀର ପ୍ରଶ୍ନର ଅଧା ଷୋଳଅ ଉତ୍ତର ଏଡ଼ିବା ମୋ ପକ୍ଷରେ ଗୋଟାଏ ବଡ଼ ସାଧନା ରୂପରେ ଦେଖା ଦେଉଛି । ବୁଢ଼ୀର ବିରୁଦ୍ଧରେ ଅଭିଯୋଗ କରୁ ତାର ନାତୁଣୀ ପ୍ରତି ବିଭୂତି ବାବୁଙ୍କର ଅଯାଚିତ ତଥା ଅଶୋଭନୀୟ ଆଗ୍ରହ ନେଇ । ସେ ଯାହା ହେଉ, ଅସଂପୃକ୍ତ ଭାବେ ସଂପୃକ୍ତ, ଆମର ଏଇ ଭଡ଼ାଟିଆ ପରିବାର ନାମରେ ବିଭୂତି ବାବୁ ଯେ ଅନେକ ଭାବରେ ଅପରିହାର୍ଯ୍ୟ, ଆମେ ସମସ୍ତେ, ଅବସର ବିଶେଷରେ, ଅନୁଭବ କରିଥାଉଁ ।

( ୨ )

ବିଭୂତି ବାବୁ କେବଳ ନୁହନ୍ତି, ପ୍ରକାର ଭେଦରେ, ଆମେ ସମସ୍ତେ ଯେ ବୁଢ଼ୀର ନାତୁଣୀ ପ୍ରତି ଆଗ୍ରହୀ, ଆମ ଦିଗରୁ ଏ ସ୍ୱୀକାରୋକ୍ତି ଗ୍ରହଣ କରିବା ପାଇଁ ବୁଢ଼ୀ କୌଣସି କାଳେ ପ୍ରସ୍ତୁତ ନୁହେଁ । ତେବେ, ବୁଢ଼ୀ ଗ୍ରହଣ କରୁ କି ନ କରୁ, ଆମ ଆଗ୍ରହର ସାର୍ଥକତା ଥାଉ କି ନ ଥାଉ, ସୌନ୍ଦର୍ଯ୍ୟକୁ ବଞ୍ଚାଇ ରଖିବାକୁ ହେଲେ ତାହା ସର୍ବସାଧାରଣଙ୍କ ଆଖିକାନରେ ନିକଟ ସଂପର୍କରେ ଯେହେତୁ ଆଣିବାକୁ ହୁଏ ଏବଂ ମୁଁ ଯେହେତୁ ଅନୁଭବ କରି ପାରୁଛି ଯେ ବୁଢ଼ୀର ନାତୁଣୀ ଆଡାମମ୍ବା ପ୍ରକୃତରେ ସୌନ୍ଦର୍ଯ୍ୟର ଗୋଟିଏ ଆଧାର, ଅନ୍ୟମାନଙ୍କ କୌତୁହଳ ଦୂର କରିବା ଉଦ୍ଦେଶ୍ୟରେ, ସୌନ୍ଦର୍ଯ୍ୟର ଜଣେ ବିନୀତ ପୂଜାରୀ ଭାବରେ, ମୁଁ ଆଡାମମ୍ବା ରୂପର ଅବତାରଣା ନିବେଦନ କରୁଛି ।

ଆଡାମମ୍ବା, ତାକ ନାଁ ଅମ୍ବା, ଷୋଳ ସତର ବର୍ଷ ବୟସର ଅନୁଢ଼, ତମାଳ-ଶ୍ୟାମଳାଙ୍ଗୀ । କ୍ଷୀଣ ତନୁ, କୃଶ କଟି, ମାଂସଳ ନିତମ୍ବ, ଟେନିସ୍ ବଲ୍ ଆକୃତିର ଦୁଇଟି ଅସଂଲଗ୍ନ ସ୍ତନ, ନାତିଦୀର୍ଘ ଗ୍ରୀବା, ହଂସଡ଼ିମ୍ବ ତୁଲ୍ୟ ମୁଖ, କ୍ଷୁଦ୍ର ଓଠ,ବାସନା-ଆର୍ଦ୍ର କ୍ଷୁଦ୍ର ପାଟି,

ତିଳଫୁଲ ନାସାର ଡାହାଣ ପୁଡ଼ାରେ ବସଣି, ଦୁଇଟି ବ୍ୟଗ୍ର, ଉଜ୍ଜ୍ୱଳ-ଙ୍କଳ ହରିଣ ଆଖି, ନିର୍ମଳ ଦନ୍ତପଂକ୍ତି, ତମାଳ କେଶର ଭଳି ଆଖି ପତା ଦାଲ, ରେଖାହୀନ ପ୍ରଶସ୍ତ କପାଳ, ନିତମ୍ବ ଅତି କ୍ରାନ୍ତ କଠିଳ କୃଷ୍ଣ ବେଣୀ ମୂଳରେ ସୁକ୍ଷ୍ମ ଗୁଚ୍ଛ, ଅଗ୍ର ଭାଗରେ ସୁନା ମୁଣ୍ଡି ଝୁମ୍ପା, ବେକରେ ପଥର ବସା ହାର, କାନରେ ଝୁମ୍କି ହାତରେ ତିନି ପଟ ଲେଖା ସୁନା ଚୁଡ଼ି, ବାମ ଅନାମିକା ଅଙ୍ଗୁଳିରେ ନୀଳପଥର ମୁଦି, ପାଦରେ ପାଉଁଜି । ଅମ୍ବା ନୀଳ ପୋଷାକ ବିଶେଷ ପସନ୍ଦ କରେ । ଇସ୍ତ୍ରି ନୀଳ ବ୍ଲାଉଜ୍ ଉପରେ ଗାଢ଼ ନୀଳ ଜରି ସାଢ଼ି ତାକୁ ସୁନ୍ଦର ଦିଶେ ମଧ୍ୟ । ସଂକୋଚ ନ କରି ସତ୍ୟ କହିଲେ ଅମ୍ବା ବଡ଼ ଲୋଭନୀୟା: ପ୍ରେମଲୀଳା ନିମନ୍ତେ ଏକାନ୍ତ ସ୍ପୃହଣୀୟା ।

ଆଶା ଓ ସଫଳତା ମଝିର ବ୍ୟବଧାନ ଦୂର କରିବା ପାଇଁ ମଣିଷ ତାର ଯଥା ଶକ୍ତି ନିୟୋଜିତ କରିଥାଏ ଉଦ୍ୟମ ଉପରେ । କିନ୍ତୁ, ବେଳେ ବେଳେ, ମଣିଷର ସ୍ୱାଭାବିକ ଆଶା ଏପରି ଆଶ୍ଚର୍ଯ୍ୟ-ଜନକ ଭାବେ ମଧୁର ଦୁରାଶାରେ ପରିଣତ ହୁଏ, ତାର କଳ୍ପନାରୁ ବ୍ୟବଧାନ ଭାବନା ସହଜରେ ଦୂର ହୋଇଯାଏ । ଉଦ୍ୟମ ପ୍ରତୀତ ହୁଏ ଅସଭ୍ୟତା ରୂପରେ । ଅପୂର୍ଣ୍ଣ ଆକାଂକ୍ଷାର ବେଦନା ଭିତରୁ ସେ ଏକ ଶରୀରୀ ଆନନ୍ଦ ଲାଭ କରି ସନ୍ତୋଷ ପାଏ ।

ଏ ପ୍ରକାର ସନ୍ତୋଷର ଭାବ ଲକ୍ଷ୍ୟ କରି ହୁଏ ଗୋପୀନାଥ ବାବୁଙ୍କ ମୁହଁରୁ । ଦଶ ବର୍ଷ ବୟସରୁ ଅମ୍ବା ଗୋପୀନାଥ ବାବୁଙ୍କ ସଂସର୍ଗରେ ଆସିଛି । ତାଙ୍କର କୋଳରେ ବସି କୈଶୋର ସୁଲଭ ଛନଛନ ଭଙ୍ଗୀରେ ସେ ନିଜ ଦେହରେ ଯୌବନର ରୂପାୟନ ଦେଖିଛି । ପ୍ରେମର ଉନ୍ମେଷରେ ପୁଲକିତ ହୋଇଛି । ପୁରୁଷ ଦେହର ବିଦ୍ୟୁତ ତା'ର ପ୍ରତ୍ୟେକ ରକ୍ତ କଣାରେ ପ୍ରାଣର ବେଗ ଉଚ୍ଛଳ କରିଛି । ଗୋପୀନାଥ ବାବୁଙ୍କ କୋଳରୁ ଉଠିଯାଇ, ନିଜ

ବିଶେଷ ଦ୍ୱାର ରୁଦ୍ଧ କରି, ଦର୍ପଣ ଆଗରେ ଗୋଟି ଗୋଟି କରି ସେ ନିଜର ପରିଧାନ ଉତାରି ଦିଏ । ଆବେଶ ଆଖିରେ ନିଜକୁ ନିରୀକ୍ଷଣ କରେ । ସେ ଦେଖାର ଶେଷ ଯେପରି ନାହିଁ ! ଅକସ୍ମାତ୍ ନଗ୍ନତାର ଚେତନା ତାର ମୁହଁରେ ସଲଜ୍ଜତାର ଏକ ଅପୂର୍ବ ରଙ୍ଗ ଲେପନ କରେ । ସେଥିରେ ମିଶି ରହିଥାଏ କୌତୂହଳ, କୌତୁକ ଓ କାମ୍ୟ କାମିତା । କିନ୍ତୁ ପର ମୁହୂର୍ତ୍ତରେ କି ଏକ ଅନିର୍ବଚନୀୟ ମାନବତାରେ ସେ ଅଧୀର ହୋଇ ଉଠେ । ଉଚ୍ଛନ୍ନ ହାତରେ ସ୍ତନ ଦୁଇଟିକୁ ଚିପି ଧରେ । ବାହୁ, ସ୍କନ୍ଧ ଓ ହାତର ଅଙ୍ଗୁଳି ଚୁମ୍ବନ କରେ । ମାଟିରେ ଗଡ଼ି ଜାନୁ ଦୁଇଟିରେ ବାହୁ ବେଷ୍ଟନ କରେ । ରୁଦ୍ଧ ଶ୍ୱାସ ଭିତରେ କାମନାର ଭର ଉପଲବ୍ଧି କରେ । ଯେତେ ଭାବରେ ସମ୍ଭବ, ବିଭିନ୍ନ ଭଙ୍ଗୀରେ ନିଜର ଅଙ୍ଗ ପ୍ରତ୍ୟଙ୍ଗ ଭିତରେ ଘନିଷ୍ଠତା ସଂପାଦନ କରେ । ଗୋପୀନାଥ ବାବୁଙ୍କ ଦେହର ବିଦ୍ୟୁତ୍ ଅନୁଭବନ ତାର ଭିତରେ ଯେପରି ଉତ୍ତାପ ରଚନା କରି ଦେଇଛି । ତାର ପ୍ରେମ କ୍ଷୁଧା ସର୍ବଗ୍ରାସୀ ହୋଇ ଉଠିଛି । କିନ୍ତୁ, ଏ ସବୁ ପଛରେ ବିଜୁଳିଦଗ୍ଧ ଖମ୍ବ ଭଳି ପ୍ରୌଢ଼ ଗୋପୀନାଥ ବାବୁ ସ୍ଥାଣୁ ହୋଇ ଯାଇଛନ୍ତି । ସୁଦେବୀ ଅମ୍ବାର ସ୍ପର୍ଶ ତାଙ୍କର ସ୍ପର୍ଶଜ୍ଞାନ ଲୋପ କରି ଦେଇଛି । ତାର ଚଞ୍ଚଳ ଯୌବନ ତାଙ୍କୁ ପକ୍ଷାଘାତଗ୍ରସ୍ତ କରିଛି । ଦିନେ କହିଥିଲି,

"ଅମ୍ବା ତ ଆପଣଙ୍କୁ ବେଶ୍ ଆପଣାର କରି ନେଇଛି !

ମତଲବ କଣ ?"

ଗୋପୀନାଥ ବାବୁଙ୍କ ମୁହଁ ଦେଖି ମନେ ହେଲା ସେ ଯେପରି ମୋ ପାଖରୁ ଏଥର ଏକ ପ୍ରୀତିକର ଉତ୍ତର ଗ୍ରହଣ ଛନ୍ତି । ମୁଁ ଭଲ ଭାବେ ଜାଣେ, ଅମ୍ବା ଆଖିରେ ଗୋପୀନାଥ ବାବୁ ପ୍ରଣୟୀର ରୂପ ଦେଇ ବିରାଜି ନାହାନ୍ତି । ତା'ର ପାଇଁ ସେ ଗୋଟିଏ ଜୀବନ୍ତ

ଖେଳଣା ମାତ୍ର । ତାଙ୍କୁ ଯେତେ ଭାବରେ ଧରି ଖେଳିଲେ ହେଲେ ସେ କେବେ କ୍ଲାନ୍ତ ଅନୁଭବ କରିବେନି । ଗୋପୀନାଥ ବାବୁଙ୍କର ଧନ ସଂପଦ ଯଦି ବିଶେଷ ଥାନ୍ତା, ତାଙ୍କୁ ବିବାହ କରିବା ପାଇଁ ଅମ୍ବା ହୁଏତ ଅମଙ୍ଗ ହୁଅନ୍ତାନି । କାରଣ ତାଙ୍କୁ ଆଙ୍ଗୁଳିରେ କରି ସେ ତାର ଇଚ୍ଛାମତ ଗୁପ୍ତ ପ୍ରଣୟ ଲୀଳା ରଚନା କରି ପାରନ୍ତା । ଏ କଥା ଜାଣିଲେ ମଧ୍ୟ ଗୋପୀନାଥ ବାବୁ ଅସନ୍ତୁଷ୍ଟ ହୁଅନ୍ତେ ବୋଲି ମୁଁ ଆଶଙ୍କା କରି ପାରୁନି କାରଣ ତାଙ୍କ ପରି ଲୋକେ କାହାକୁ ପ୍ରେମ କଲାବେଳେ ନିଜକୁ ସଂପୂର୍ଣ୍ଣରୂପେ ଭୁଲି ଯାଇଥାନ୍ତି । ତଥାପି, ଆଖିରେ ଇସାରା ଦେଇ କହିଲି, "ମୁଁ ଆପଣଙ୍କର ସଫଳତା କାମନା କରେ ।" ଗୋପୀନାଥ ବାବୁ ଆଗରୁ କେବେ ଅମ୍ବାକୁ ଯଦି ଅତି ନିକଟରେ ପାଇ ନ ଥିବେ, ଅନ୍ତତଃ ସେଇ ମୂହୁର୍ତ୍ତିକ ପାଇଁ ପାଇଗଲେ ବୋଲି ମତେ ଜଣାଗଲା ।

ଶଙ୍କର ବାବୁ ସ୍ଥାନୀୟ ଏକ ହାଇସ୍କୁଲ୍‌ରେ ଶିକ୍ଷକତା କରନ୍ତି । ବୟସ ପଚାଶି ତରିଶି ଭିତରେ । ନିର୍ମଳ ପୋଷାକ ପିନ୍ଧନ୍ତି କିନ୍ତୁ ସେଥିରେ ଶୈଳୀ କମ୍ପା ଛିଞ୍ଚ କଟ୍ଟା ଥାଏନି । ନାକର ସ୍ପଷ୍ଟ ତିଳକ, ବେକରେ ଦୁଇ ସୋରି ତୁଳସୀ ମାଳି ସାହେବୀ ପୋଷାକ ସଙ୍ଗେ ମଧ୍ୟ ଚଳେ । ସହଜରେ ଦୃଷ୍ଟି ଆକର୍ଷଣ କରିବା ପାଇଁ ଶଙ୍କର ବାବୁ ଏଭଳି ବେଶ ହୁଅନ୍ତି ବୋଲି ବିଭୂତି ବାବୁ ଯଦିଓ ମନ୍ତବ୍ୟ କରନ୍ତି ମୁଁ କିନ୍ତୁ କହି ପାରେ, ତାମିଲମାନେ ବିଚିତ୍ର ଭାବେ ଚୁଟି ରଖିଲା ଭଳି କମ୍ପା ଜତୁର ଓଡ଼ଶା ପଟେ ଧୋତି ଉପରେ ହେଟ୍ ମୁଣ୍ଡେଇଲା ଭଳି ଶଙ୍କର ବାବୁ ତାଙ୍କର ମାଳି ଓ ତିଳକକୁ ଆତ୍ମୀୟ ଜ୍ଞାନ କରନ୍ତି । ନୀତି ପାଳନର ଦୃଢ଼ତା ତାଙ୍କର ନ ଥିଲେ ମଧ୍ୟ ସେ ନୀତି ଭ୍ରଷ୍ଟ ହେବା କାହା ଆଖିରେ ଯେପରି ନପଡ଼େ ସେ ବିଷୟରେ ଖୁବ୍ ଜଗି ରଖି ଚଳନ୍ତି । ଧୂମ୍ରପାନ ଅନୁଚିତ ବୋଲି ସେ ଯେହେତୁ

ଛାତ୍ରମାନଙ୍କୁ ଶିକ୍ଷା ଦିଅନ୍ତି, ରାସ୍ତାରେ ଗଲାବେଳେ ଢେଡ଼େ ବଡ଼ କମ୍ପା ସିଗାରେଟ୍ ଟାଣନ୍ତିନି । ନାସ୍ତି କମ୍ପା ରାଜନୀତି ଧର୍ମରେ ପ୍ରକାଶ୍ୟ ଆଲୋଚନା ସେ ପସନ୍ଦ କରନ୍ତିନି । ଏ ସବୁ ମିଶାଇ ଦେଖିଲେ ଶଙ୍କର ବାବୁ ଜୀବନରେ ଶିକ୍ଷକ ବିନା ଆଉ କିଛି ହୋଇ ପାରି ନ ଥାନ୍ତେ । ଆଉ କିଛି ହୋଇଥିଲେ ମଧ୍ୟ ହୁଏତ ସୁଖୀ ମଣନ୍ତେନି । କିନ୍ତୁ, ବର୍ତ୍ତମାନ ତାଙ୍କ ମନରେ ଟିକିଏ ଯେଉଁଠି ଦୁଃଖ ରହି ଯାଇଛି ବୋଲି ତାଙ୍କର ଉଦାସ ଚେହେରା ଦେଖିଲେ ସନ୍ଦେହ କରି ହୁଏ । ଦୁଃଖ ହୁଏତ ଅମ୍ବା ପାଇଁ । ମୁଁ କହୁଛି ହୁଏତ; କିନ୍ତୁ ବିଭୂତି ବାବୁ ଏ ବିଷୟରେ ନିଶ୍ଚିତ । ଅମ୍ବା ଶଙ୍କର ବାବୁଙ୍କ ଛାତ୍ରୀ । ଗତ ବର୍ଷ ମାଟ୍ରିକ ପାସ୍ କରି ସାରିଛି । ଘରେ ଅତିରିକ୍ତ ଶିକ୍ଷା ଦେଇ ସେ ତାକୁ ପରୀକ୍ଷା ପାଇଁ ପ୍ରସ୍ତୁତ କରିଥିଲେ । ଅମ୍ବା ପାସ୍ କଲା ପରେ ବୁଢ଼ୀ ତାଙ୍କୁ ଶହେଟି ଟଙ୍କା ପାରିଶ୍ରମିକ ଯାଚି ଥିଲା ମଧ୍ୟ । କିନ୍ତୁ ସେ ଗ୍ରହଣ କରି ନାହାନ୍ତି । ବିଭୂତି ବାବୁ କହନ୍ତି—

"ଲୋକଟା କେଡ଼େ ବୋକା ଦେଖିଲେ, ଶହେ ଟଙ୍କା ହାତଛଡ଼ା କରି ଦେଲା । ସେଇ ଟଙ୍କାରେ ଦଶଟି ଅମ୍ବା ସେ ଆହରଣ କରି ପାରିଥାନ୍ତା । ପାରିଶ୍ରମିକ ବିନା ତାର ଉଚିତ ପ୍ରାପ୍ୟ, ପ୍ରାଣ ଚାହିଁବା ଦୁରାଶା ନୁହେଁ ? ବହି ପଢ଼ାଇ ପ୍ରେମ ବିଷୟରେ ଯିଏ ଶିକ୍ଷା ଦିଏ, ସେ ଶିକ୍ଷକର ସୀମା ଭିତରେ କେବଳ ରହିଯାଏ । ଛାତ୍ରୀର ପ୍ରଣୟୀ ହୋଇ ପାରେନା । ଆପଣ ପ୍ରେମ କବିତା ଲେଖୁଛନ୍ତି । ଆପଣଙ୍କ କବିତା ପ୍ରୟୋଗ କରି କିଏ କେଉଁ କୁଞ୍ଜରେ ମିଳନ ରଚନା କରୁଛି । କିନ୍ତୁ, ଆପଣ କଣ ପାଉଛନ୍ତି ?"

ବିଭୂତି ବାବୁ ମିଥ୍ୟା କହି ନାହାନ୍ତି । ମୋର ଗୋଟାଏ ଘଟଣା ମନେ ପଡ଼ୁଛି । ମୋର ଜଣେ ମହିଳା ବନ୍ଧୁ, ଯାହାଙ୍କ ପାଇଁ ମୋର ମନରେ ଟିକିଏ ପ୍ରବଣତା ଦିନେ ସୃଷ୍ଟି ହୋଇଥିଲା ଏବଂ ଉତ୍ସାହ

ଯାଉଥିଲେ ହୁଏତ ପ୍ରେମରେ ପରିଣତ ହୋଇଥାନ୍ତା, ମତେ ଥରେ ଅନୁରୋଧ କରିଥିଲେ, ନବବର୍ଷର ଗୋଟିଏ ଶୁଭେଚ୍ଛା କବିତା ଆକାରରେ ଲେଖି ଦେବା ପାଇଁ । ମୁଁ ଲେଖି ଦେଇଥିଲି । ସେ କବିତାଟି ସେ ତାଙ୍କର ବନ୍ଧୁଙ୍କ ପାଖକୁ ପଠାଇଥିଲେ । ତାହା ତାଙ୍କର ଖୁବ୍ ପସନ୍ଦ ହୋଇଲା ବୋଲି ମହିଳା ବନ୍ଧୁ ମୋ ପାଖରେ ଉପକୃତ ପ୍ରକାଶ କରିଥିଲେ । ଆଜି ସେ ଦୁହେଁ ବିବାହିତ ଜୀବନ ଯାପନ କରୁଛନ୍ତି । ଏଥିରେ ମୁଁ ଈର୍ଷିତ ନୁହେଁ । କିନ୍ତୁ ବେଳେ ବେଳେ ମନେ ହୁଏ, ସେ ମହିଳାଙ୍କ ପାଖରୁ ମୁଁ ଯେପରି ମୋର କିଛି ଗୋଟାଏ ପ୍ରାପ୍ୟରୁ ହୁଏତ ବଞ୍ଚିତ ହୋଇଗଲି । ଶଙ୍କର ବାବୁ ସତରେ ଯଦି ଅମ୍ବା ପାଇଁ ବିକଳ ହୋଉଥାନ୍ତି, ତାଙ୍କୁ ଶାନ୍ତ କରିବା ସହଜ ହେବନି । ଖୁବ୍ ଭଲ ହୁଅନ୍ତା, ଉପଯୁକ୍ତ ପାତ୍ରୀଟିଏ ଦେଖି ସେ ଯଦି ବିବାହ କରି ନିଅନ୍ତେ । ତାହାହେଲେ, ତାଙ୍କର ମନରୁ ଅମ୍ବା ଉତ୍ତୁରି ଯିବା ସଙ୍ଗେ ଦେହରୁ ମାଳି ଓ ଡଳଙ୍କ ମଧ୍ୟ ଦୂର ହୁଅନ୍ତା ।

ବୁଢ଼ୀର ସ୍ୱାସ୍ଥ୍ୟ ପ୍ରତି ମୁକୁନ୍ଦ ବାବୁ ଯେତେ ଭଲ ଦୃଷ୍ଟି ଦିଅନ୍ତି ସେତିକ ନିଜର ସ୍ୱାସ୍ଥ୍ୟ ପ୍ରତି ରଖିଲେ ତାଙ୍କର କମ୍ ଉପକାର ହୁଅନ୍ତାନି । ସେ ଯଦିଓ କୌଣସି କଠିନ ରୋଗରେ ଶଯ୍ୟାଶାୟୀ ହୋଇ ନାହାନ୍ତି, ତଥାପି ତାଙ୍କୁ ଦେଖିଲେ ମନେ ହେବ ସେ ଯେପରି ଦିନହୁଦିନ ପରେ ଏଇମାତ୍ର ରୋଗ ଶଯ୍ୟା ଛାଡ଼ି ଉଠିଛନ୍ତି । ଦୀର୍ଘ, କଂକାଳସାର ଦେହ, କୋଠରଗତ ଆଖି, ଢିମା ଢିମା ହନୁ ହାଡ଼, ପିଚାପିଚି ଚେପ୍ଟା ନାକ, ଧୋଧଳ ନିଶ, ଛେଳିର ଦାଢ଼ି, ଦାଢ଼ନଖି ଆଙ୍କୁଡ଼ିର ଗଲାଣି, ଦୁଇ ପାଟି ଦୋଡ଼ା ଦାନ୍ତ—ହସିଲେ କାମୁଡ଼ା ଆସିଲା ଭଳି ବୋଧ ହୁଏ । ହୋମିଓପେଥି ଚିକିତ୍ସାର ବହୁଳ ପ୍ରଚାର କାମନା କଲାବେଳେ ଏପରି ଲୋକଙ୍କୁ ଚିକିତ୍ସା ନିମନ୍ତେ ଅନୁଜ୍ଞା ପତ୍ର

ଦେବା ଆଦୌ ବାଞ୍ଛନୀୟ ନୁହେଁ । ଏଭଳି ଲୋକ ମଧ୍ୟ ପ୍ରେମ କରିବା ଲାଗି ଯେ ଅଗ୍ରସର ହୋଇପାରେ, ଜୀବନ-ଶକ୍ତିର ଔଦ୍ଧତ୍ୟ ଓ ଦୁର୍ଦ୍ଧର୍ଷତା କଥା ଭାବି ମୁଁ ବିସ୍ମୟରେ ଅଭିଭୂତ ହୁଏ । ନାରୀକୁ ଆକୃଷ୍ଟ କରେ ପୁରୁଷର ରୂପ ଓ ସ୍ୱାସ୍ଥ୍ୟ । ଏହା କାମ ଧର୍ମ ସମ୍ମତ କିନ୍ତୁ ଏଇ ଉଭୟ ବସ୍ତୁରୁ ବେଚାରା ମୁକୁନ୍ଦ ବାବୁ ନିଷ୍ଠୁର ଭାବେ ବଞ୍ଚିତ । ତଥାପି, ନାରୁଣୀର କରୁଣା ଲାଭ ଆଶାରେ ସେ ପ୍ରତିଦିନ ଆଉର ସ୍ୱାସ୍ଥ୍ୟ ଉଦ୍ଧାରଣ କରନ୍ତି । ସାଗୁ ମଞ୍ଜି ଭଳି କେତେଟି ବଟିକା ବୁଢ଼ୀର ପାକୁଆ ପାଟି ଭିତରେ ଅଜାଡ଼ି ଦିଅନ୍ତି । ଏହା ସତ୍ତ୍ୱେ, ଠିକ୍ ସମୟରେ ବୁଢ଼ୀ କିନ୍ତୁ ଘର ଭଡ଼ା ଟଙ୍କା ମାଗିବାକୁ କେବେ ଭୋଲେ ନାହିଁ । ଗୋପୀନାଥ ବାବୁ ଅସମୟରେ ବେଳେ ବେଳେ ସାହାଯ୍ୟ କରୁ ନଥିଲେ ମୁକୁନ୍ଦ ବାବୁ ହୁଏତ ଆତ୍ମହତ୍ୟା କରି ସାରନ୍ତେଣି । କାରଣ, ବସ୍ତୁତ ବାବୁଙ୍କ ମତରେ, ଅମ୍ବା ଅଖିର ଅନ୍ତରାଳରେ ଜୀବନ ଧରି ରହିବା ସେ କଳ୍ପନା କରି ପାରିବେନି । ବସ୍ତୁତ ବାବୁ ଥରେ ମୋ ଆଗରେ ପ୍ରସ୍ତାବ ଦେଇଥିଲେ : "ଅଭିନୟ କରିବା ଲାଗି ଆପଣ ଯଦି ଏଇ ଲୋକଟିକୁ ମନାଇ ପାରନ୍ତେ, ମୁଁ ଏଠି ଗୋଟାଏ ଥିଏଟର ପାର୍ଟି ସଙ୍ଗଠନ କରନ୍ତି । ଆଜିର ଓଡ଼ିଶା ରଙ୍ଗମଞ୍ଚରେ ଏଭଳି ଚରିତ୍ରର ଅଭାବ ଯଦିଚ ନାହିଁ ତଥାପି, ଶିଳ୍ପ ଦୃଷ୍ଟିରୁ, ଏ ପ୍ରକାର ପୂର୍ଣ୍ଣତା ଅତ୍ୟନ୍ତ ବିରଳ ।"

ଜାଣିବା କଥା, ମୁକୁନ୍ଦ ବାବୁ ଏ ପ୍ରସ୍ତାବରେ ରାଜି ହୁଏନ୍ତେନି ।

( ୩ )

ମଣିଷ ଭିତରେ ଯାହା କିଛି ସୁନ୍ଦର, ଯାହା କିଛି ଅତୁଳନୀୟ ସବୁ ଆସିଚି ତାର ମାତୃବକ୍ଷର ଅମୃତ ଓ ସୂର୍ଯ୍ୟାଲୋକରୁ । ଏଥିଲାଗି ଜୀବନକୁ ମଣିଷ ଏତେ ପ୍ରଗାଢ଼ ଭାବେ ଭଲପାଏ । ଆଉ, ଜୀବନ

ଏ ଦେହ ଭିତରେ ରହିବ ବୋଲି ମଣିଷ ତାର ଦେହଟିକୁ ସବୁ କାହାର ଊର୍ଦ୍ଧ୍ୱରେ ରଖେ । ଦେହର ସୁରକ୍ଷା ଲାଗି ଯଥାସାଧ୍ୟ ଯତ୍ନ ସେ ନିଏ କେବଳ ନୁହେଁ, ସେଥିରେ କୌଣସି ପ୍ରକାର ଲାଞ୍ଛନାର ଦାଗ ଯେପରି ନଲାଗେ ସେଥିଲାଗି ସବୁ ସମୟରେ ସାବଧାନ ରହିଥାଏ ।

ଅନିଚ୍ଛା ସତ୍ତ୍ୱେ ଥରେ ଗୋଟାଏ କାର୍ଯ୍ୟ କରି ଦେଇ, ଫଳରେ ଅବଶିଷ୍ଟ ଜୀବନ କାଳ ପାଇଁ ଆତ୍ମ ସମ୍ମାନ ହରାଇ ବସିବା କେହି କେବେ ପସନ୍ଦ କରନ୍ତିନି । ମୁଁ ଜାଣେ, ସ୍ୱେଚ୍ଛାଗୃହ ଭିତରୁ ବିନୋଦ ଲାଭ କରି ପାରନ୍ତି କେବଳ ରାଜା ଓ ନିଷ୍କର୍ମା ଧନୀ ଶ୍ରେଣୀର ଲୋକେ । ବହୁ ନାରୀ ରମଣ ଓ ପରଦାରା ହରଣ ସଙ୍କାର ଏକ ରାଜୋଚିତ ବିଳାସ । କିନ୍ତୁ ସାଧାରଣ, ସାମାଜିକ ଲୋକ ପକ୍ଷରେ ଏ ପ୍ରକାର ବିଳାସ ଏକ ବର୍ବରତା ।

ନାରୀର ପ୍ରଥମ ଯୌବନ ପ୍ରତି ବିଭୂତି ବାବୁଙ୍କ ଅନୁରକ୍ତି ସାମାଜିକ ଜୀବନ ପକ୍ଷରେ ବିପଜ୍ଜନକ ନୁହେଁ ବୋଲି ମୋର ଧାରଣା କାରଣ ତାଙ୍କର ଏ ପ୍ରକାର ଅନୁରକ୍ତି ବହୁଧା କ୍ରିୟାହୀନ ଅନୁକାଂକ୍ଷାରେହିଁ ପର୍ଯ୍ୟବସିତ ରହିଯାଏ । ଅପର ପକ୍ଷରୁ ପ୍ରରୋଚିତ ନହେଲେ ସେ କୌଣସି ପ୍ରକାର କର୍ମାନୁଷ୍ଠାନ ପରିକଳ୍ପନା କରନ୍ତିନି । ଏ ପ୍ରକାର ପ୍ରରୋଚନାର ପ୍ରଭାବ ମଧ୍ୟ ସ୍ଥିତି-ସାପେକ୍ଷ । ଆଧାରତଃ, ସେ ସ୍ୱାମୀ ଉପାଦାନର ଲୋକ । ଅବସ୍ଥା ଓ ପରିବେଶର ଗୁଣରେ କେବଳ ସେ ପ୍ରେମିକ ଭୂମିକାରେ ଅବତରଣ କରିଥାନ୍ତି । ଏଥିରେ ତାଙ୍କର ରୁଚି ଦୂଷିତ ନହେଲେ ମଧ୍ୟ ସେ ତୃପ୍ତି ଲାଭ କରି ପାରନ୍ତିନି । ବିବାହର ପ୍ରୟୋଜନୀୟତା ସେ ଭଲ ଭାବେ ଉପଲବ୍ଧି କରିଚନ୍ତି । କିନ୍ତୁ ତାଙ୍କର ଧାରଣା, ସଂପ୍ରତି ସମାଜ ଭିତରେ ସେ ଯେଭଳି ନିଃସଙ୍ଗ

ଅବସ୍ଥାରେ ରହୁଚନ୍ତି ସେଥିରେ ବିବାହର ଜଞ୍ଜାଳ ସମ୍ଭାଳିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ ।

ଅମ୍ବା ପ୍ରତି ତାଙ୍କର ଭାବ ଗଭୀର ଆସକ୍ତି ନୁହେଁ; ଏକ ପ୍ରକାର ଜିଜ୍ଞାସୁ ଆଗ୍ରହର । ଯେଥିଲାଗି ସେ ବୁଢ଼ୀର ସନ୍ଦେହ ଜାଗ୍ରତ କରି ପାରିଚନ୍ତି ଏବଂ ଅମ୍ବା ମଧ୍ୟ ତାଙ୍କ ପ୍ରତି ବିଶେଷ ପ୍ରସନ୍ନ ନୁହେଁ । ଏହାର କାରଣ ହୁଏତ ନୁହେଁ ଯେ ଅମ୍ବା ବିଭୂତି ବାବୁଙ୍କ ସଙ୍ଗେ ଘନିଷ୍ଠତା ସ୍ଥାପନ ଲାଗି ଅନିଚ୍ଛୁକ; ତାଙ୍କର ଗୋପନୀୟତା ସମ୍ପର୍କରେ ସେ ଖୁବ୍ ସଜାଗ ସାବଧାନ । ଏଥିରେ ଗୋପୀନାଥ ବାବୁ, ଶଙ୍କର ବାବୁ ଓ ମୁକୁନ୍ଦ ବାବୁ କିନ୍ତୁ ଅତ୍ୟନ୍ତ ଆନନ୍ଦିତ । ତେବେ, ବିଭୂତି ବାବୁଙ୍କ ସମ୍ମୁଖରେ, କେଉଁ ଭାବରେ ହେଲେ, ସେମାନେ ଏ ଆନନ୍ଦ କେବେ ପ୍ରକାଶ କରି ପାରି ନାହାନ୍ତି । ତାର କାରଣ ହେଇ ପାରେ, ସେମାନଙ୍କର ରିକ୍ତ ଅନ୍ତର ଭିତରେ ବିଭୂତି ବାବୁଙ୍କ ଆତ୍ମୀୟତା ସମ୍ପାଦନ କରିପାରି ସେମାନେ ଗୌରବ ଅନୁଭବ କରୁଚନ୍ତି ।

ଅମ୍ବାର ଲଜ୍ଜାଶୀଳତା ତରୁଣୀ ବିଧବା ଭଳି, ଭସ୍ମାଚ୍ଛାଦିତ ଅଗ୍ନି ଭଳି ଅଥବା କୋଷ ନିବଦ୍ଧ ତୀକ୍ଷ୍ଣ ଧାର ଅସି ଭଳି । ତାର ଆନନ୍ଦ ପ୍ରକାଶ ମୁଖର ନୁହେଁ; ନୀରବରେ ପ୍ରଫୁଲ୍ଲ । ଅମ୍ବା ପ୍ରେମିକା ନୁହେଁ; କିନ୍ତୁ ପ୍ରେମ ଲୀଳାରେ ବେଶ ନିବିଡ଼ତା ପ୍ରକାଶ କରେ । ସେ ନିଜେ ଆସି ଧରା ଦିଏନି; କିନ୍ତୁ ଧରି ପାରିଲେ ପ୍ରୀତିକର ଭାବେ ଜାବୁଡ଼ି ରହେ । ପାଇବା ଲାଗି ତାର ଲୋଭ ନାହିଁ; ଦେବାରେ କିନ୍ତୁ ଖୁବ୍ ମମତା ରଖେ । ବେଳେ ବେଳେ ଏପରି ବିଚିତ୍ର ଭାବେ ସେ କଥା କହେ, ମୋର ମନେ ହୁଏ, ଆହତ ବ୍ୟକ୍ତିର କ୍ରନ୍ଦନ ଭଳି, ସେଇ ଶବ୍ଦ ଗୁଡିକ ତାର ଅନ୍ତରର କେଉଁ ଗୋପନ ବେଦନା ଭିତରୁ ଯେପରି ଉଠି ଆସୁଚି । ସେଥିରୁ ମୁଁ ଉପଲବ୍ଧି କରେ ତାର ପ୍ରେମର ନିବିଡ଼ତା, ତାର ଉତ୍କଣ୍ଠା, ତାର ଅନୁକମ୍ପା ।

ଏଡେ଼ ପ୍ରସଙ୍ଗ କ୍ରମରେ ବହ୍ନିଭୂତ ବାବୁ କହୁଥିଲେ,

"ଅମ୍ବା ମତେ ଘୃଣା କରେ । ସେ ଆପଣଙ୍କୁ ଚାହୁଁଛି ।"

ମନୋଭାବ ଗୋପନ କରି ପଚାରିଲି,

"ଆପଣଙ୍କର ଏ ଧାରଣା ଜନ୍ମିଲା କାହିଁକି ?

"ପ୍ରଥମ କଥା, ଅମ୍ବା ଭଳି ଯୁବତୀ ପ୍ରେମ ନ କରିବା ଗୋଟାଏ ଅସ୍ୱାଭାବିକତା । ଏ କ୍ଷେତ୍ରରେ ଗୋପୀନାଥ ବାବୁ, ଶଙ୍କର ବାବୁ କିମ୍ବା ମୁକୁନ୍ଦ ବାବୁଙ୍କ ପ୍ରଶ୍ନ ଉଠୁନି । ରହିଲେ ଆମେ ଦୁହେଁ । ମୋ ସମ୍ପର୍କରେ ତାର ମନୋଭାବ ମତେ ଅଜ୍ଞାତ ନୁହେଁ । ସୁତରାଂ ଆପଣଙ୍କ ବିନା ସେ ଆଉ କାହାକୁ ପ୍ରେମ କରନ୍ତା ?"

ବହ୍ନିଭୂତ ବାବୁଙ୍କ ବିଶ୍ଳେଷଣକୁ ମନେ ମନେ ପ୍ରଶଂସା ନ କରି ରହି ପାରିଲିନି । ତଥାପି କହିଲି,

"ଏତେ ବଡ଼ ବ୍ରହ୍ମପୁର ନଗରୀକୁ ଆପଣ ଏଇ ଘରଟି ଭିତରେ କେବଳ ସୀମିତ କରି ଦେଉଛନ୍ତି କାହିଁକି ?"

"ଅମ୍ବାର ପରିସର ବିସ୍ତାରକୁ ନେଇ ମୁଁ କହୁଛି । ବୁଢ଼ୀ ସେ ତାକୁ ବେଶୀ ସମୟ ବାହାରକୁ ଛାଡ଼େନି କେବଳ ନୁହେଁ, ଯିବା ଲାଗି ତାର ଆଗ୍ରହ ମଧ୍ୟ ନାହିଁ । ସେ ଆପଣଙ୍କ ଉପରେ ଆଖି ଲଗାଇ ବସିଛି ।"

"ମୁଁ ତ ସେପରି କିଛି ଅନୁଭବ କରି ପାରୁନି ।"

ବହ୍ନିଭୂତ ବାବୁଙ୍କ ସ୍ୱର ସ୍ପଷ୍ଟ ରୂପେ ଅବ୍ୟକ୍ତିକ ଜଣା ଯାଉଥିଲା :

"ଯଦି କରିଥାନ୍ତେ, ଭଲ କଥା; ମତେ ନକହିବାରେ କିଛି ଆପତ୍ତି ନାହିଁ । ଯଦି କରି ନ ଥାନ୍ତି ତେବେ ଠିକ୍ ଏ ସଜାଗ ହୁଅନ୍ତୁ । କିନ୍ତୁ, ମୋର ଗୋଟାଏ ପରାମର୍ଶ ଗ୍ରହଣ କରି ପାରିବେ ?"

"କହନ୍ତୁ ।"

"ଅମ୍ବାକୁ ବବାହ କରବା କଥା କେବେ ମନକୁ ଅଣିବେନ ।"

"କାହିଁକ ?"

ଏ ପ୍ରଶ୍ନ ପଚ୍ଛରବା ଲଗି ମୁଁ ଇଚ୍ଛା କର ନ ଥିଲ । ବଭୂତ ବାବୁ କହଲେ,

"ଅମ୍ବାର ଅନ୍ତର ଭିତରେ ଏତେ ପ୍ରଚୁର ପରମାଣ ଉଷ୍ଣତା ଓ ଉତ୍କଣ୍ଠା ମିଶି ରହଛ, ସେ କୌଣସି ସ୍ୱାମୀକୁ ନେଇ ଶାନ୍ତିରେ ଘର କର ପାରବନ । ଜଣକ ପ୍ରତ ବଶ୍ୱସ୍ତ ରହବା ତା ପକ୍ଷରେ ସ୍ୱାଭାବକ ଭାବେ ଅସମ୍ଭବ । ତାକୁ ଥରେ ଦାଷ ଉପରକୁ ଅଣନ୍ତୁ, ଉପଲବ୍ଧି କର ପାରବେ ।"

ଅମ୍ବା ସଙ୍ଗେ ଅନ୍ତରଙ୍ଗ ଭାବେ, ଏକାଧିକ ବାର ମୁଁ ଯେ ରାତ୍ରି ଯାପନ କର ସାରଛ ବଭୂତ ବାବୁଙ୍କୁ କହ ଦେବା ଲଗି ବ୍ୟଗ୍ର ହୋଇ ଉଠିଥିଲ । କନ୍ତୁ ପାରଲନ ।

( ୪ )

ଏଇ ଗୋପନ ପ୍ରଣୟ ଲୀଳା ଲଗି ଅମ୍ବା ମନରେ ଅବସାଦ କମ୍ବା ଅନୁଶୋଚନା ଜନ୍ମିନ । ଥରେ ଥରେ ମୋର ମନରେ ଯାହା ଟିକଏ ଗ୍ଳାନ ଉପୁଜେ, ଅନ୍ଧକାର ଘର ଭିତରେ ଦାଗମ୍ବରୀ ଅମ୍ବାର ସାନ୍ନିଧ ଓ ତାର ଗାଢ଼ ଚୁମ୍ବନ ଭିତରେ ତାହା ବଲୀନ ହୋଇଯାଏ । ଅମ୍ବାର ଦେହ ଓ ମନ ଉପରେ ଏକାଧିକାର ପ୍ରତଷ୍ଠା କରବା ଲୋଭରେ ମୁଁ ତାକୁ ବବାହ ପ୍ରସ୍ତାବ ମଧ୍ୟ ଦେଇଥିଲ । କନ୍ତୁ ଏକାନ୍ତ ସ୍ୱେଚ୍ଛାଚାରୀ ବନ୍ୟ ଘୃଣିକାଭେ ସେ ତାହା ପ୍ରତ୍ୟାଖ୍ୟାନ କର ଦେଇଛ:

"ବିବାହ ପରେ ତୁମେ ମୋ ପାଖରୁ ଯାହା ପାଉଥାନ୍ତ ତାହା ବର୍ତ୍ତମାନ ପାଇ ସାରିଲଣି । ବିବାହରେ ଆଉ ନୂତନତ୍ୱ କିଛି ରହିବନି । ଅଧିକନ୍ତୁ, ସ୍ୱାମୀର ଦାୟିତ୍ୱରେ ମୁଁ ତୁମକୁ ବାନ୍ଧି ରଖିବାକୁ ଚାହୁଁନି । ସ୍ୱାମୀ ପାଖରୁ ମୁଁ ଯାହା ପାଇ ନ ପାରନ୍ତି ତାହା ତୁମ ପାଖରୁ ନେଉଚି । ଆଉ, ମତେ ଯେପରି ଭାବରେ ପାଉଚ ସେପରି ଭାବରେ ହିଁ ନିଅ । କୌଣସି ଢାଳେ ମନରେ ଈର୍ଷା ରଖନି ।"

ନିବିଡ଼ ଆଲିଙ୍ଗନରେ ଜଡ଼ାଇ ଧରି ପଚାରିଲି,

"ଅନ୍ୟର ଘରଣୀ ହେବା ପରେ ମୁଁ କଣ ତୁମକୁ ଆଉ ଏପରି ଭାବରେ ପାଇ ପାରିବ ?"

ତାର ବକ୍ଷ ଉପରେ ସେ ମୋର ମୁହଁଟିକୁ ନେଇ ରଖିଲା । ସେ ସୁଖ ପାଏ ବୋଲି ମୁଁ ତାର ସ୍ତନାଗ୍ର ଲେହନ କରୁଥିଲି । ମୋର କେଶ ଭିତରେ ଧୀରେ ଧୀରେ ଅଙ୍ଗୁଳି ସଞ୍ଚାଳନ କରି ପ୍ରବୋଧ ଭରା କଣ୍ଠରେ ଅମ୍ବା କହିଲା,

"ସବୁ ଦିନେ କଣ ମୋର ଦେହ ପ୍ରତି ତୁମର ଏ ଆଗ୍ରହ ରହିବ ?"

ସଙ୍ଗେ ସଙ୍ଗେ ପ୍ରତିବାଦ ଜଣାଇଲି,

"ନିଶ୍ଚୟ ରହିବ । ତୁମେ ମତେ ଭୁଲାଇବାର ଚେଷ୍ଟା କରୁଚ ।"

କାନ୍ଦିଲା ଭାଙ୍ଗିଲା କଣ୍ଠରେ ଅମ୍ବା କହିଲା,

"ରହ, ଅପେକ୍ଷା ଉଠାଅନି । କୌଣସି ନାରୀର ପ୍ରେମରେ କୌଣସି ପୁରୁଷ ଚିର କାଳ ବାନ୍ଧି ହୋଇ ରହେନି । ତମେ ମଧ୍ୟ ରହିବନି । ପୁରୁଷର ଚିରଂଶା ସବୁବେଳେ ନୂତନର ସନ୍ଧାନ ଲାଗି ବ୍ୟାକୁଳ ରହେ । ମୋର ବିବାହ ପରେ ମତେ ଆଉ ପାଇବାର ଆଶା ରଖନି ।"

ଦୁଇ ହାତରେ ମୋର ମୁହଁଟିକୁ ତୋଳି ଧରି ବଡ଼ ଆଗ୍ରହରେ ସେ ମୋର କପାଳ, ଆଖି, ଗାଲ ଓ ଅଧର ଚୁମ୍ବନ କରି କହିଲା,

"ମୋର କଥା ମାନିବ ତ ?"

ବାଧ୍ୟ ଶିଶୁ ଭଳି ଉତ୍ତର କଲି,

"ମାନିବ ।"

"ହଉ, କାଲିର ଦୁର୍ଭାବନା ଲାଗି ଆଜିର ଏ ମୁହୂର୍ତ୍ତଟିକୁ ଶୋକାକୁଳ କରିବାର କିଛି ଅର୍ଥ ନାହିଁ । ଆସ.... ...."

( ୫ )

ଅମ୍ବା ଆହୁରି ବିବାହ କରନ୍ତି । ବୁଢ଼ୀର ମୃତ୍ୟୁ ପୂର୍ବରୁ ସେଥିର ସମ୍ଭାବନା ମଧ୍ୟ ଦେଖା ଯାଉନି । ମୁକୁନ୍ଦ ବାବୁଙ୍କ ନିୟମିତ ଚିକିତ୍ସା ଫଳରେ ବୁଢ଼ୀର ସ୍ୱର୍ଗବାସ ତଥି ଘୁଞ୍ଚି ଘୁଞ୍ଚି ଯିବା ଭଳି ବୋଧ ହେଉଛି । ଗୋପୀନାଥ ବାବୁ ଆଜିକାଲି କବିତା ଚର୍ଚ୍ଚାରେ ଅବସର ସମୟତକ ପ୍ରାୟ ବିତାଉଛନ୍ତି । ଅମ୍ବା ଉପରେ ଗୋଟିଏ କବିତା ସେ ମୋ ଆଗରେ ପଢ଼ି ଶୁଣାଇ ଥିଲେ । ତାଙ୍କୁ ଉତ୍ସାହିତ କରିଛି । ଶଙ୍କର ବାବୁଙ୍କ ପାଇଁ ପାତ୍ରୀ ଯୋଗାଡ଼ ହୋଇ ପାରିନି । ବିଭୂତି ବାବୁ ଥିଏଟର୍ ପାର୍ଟି ସଙ୍ଗଠନ କରି ପାରି ନାହାନ୍ତି । ଅମ୍ବା ଏତେ ତାର ଅନୁଗ୍ରହରୁ ବଞ୍ଚିତ କରନ୍ତି ।

ଏଇ ଘର ଛାଡ଼ି ଯିବା ଲାଗି ଅଭିଳାଷ କାହାରି ହେଲେ ନାହିଁ । କର୍ମ କ୍ଷେତ୍ର ବାହାରେ, ଅବସର ସମୟତକ ପ୍ରତ୍ୟେକେ ନିଜ ନିଜ ନୀଡ଼ରେ ପ୍ରେମ କ୍ଷେତ୍ର ପ୍ରସ୍ତୁତ କରିବାରେ ବିନିଯୋଗ କରନ୍ତି । ଜୀବନର ସମସ୍ତ ଆଶା, ଆକାଂକ୍ଷା ଏଇ ବ୍ୟର୍ଥ ପ୍ରେମର ବନବାସ ଭିତରେ ଠୁଳ କରି ଚାରିଜଣ ବୁଭୁକ୍ଷୁ ମଣିଷ, କେବଳ ବଞ୍ଚି ରହିବା ଲୋଭରେ, ଅମ୍ବାର ଅମୃତ ପାଇଁ ବ୍ୟାକୁଳ ପ୍ରତୀକ୍ଷା କରନ୍ତି ।



# ଲେଖକଙ୍କ ଅନ୍ୟାନ୍ୟ ବହି

ସ୍ୱପ୍ନସିନ୍ଦୂର (କବିତା) ଟ ୦୫

ସାଧାରଣ ସତ୍ୟ (କ୍ଷୁଦ୍ରଗଳ୍ପ) ଟ ୧।୮

ମହକ ,, ଟ ୧।

ହେଲ କକା ,, ଟ ୧।

କେନ୍ଦ୍ର ଓ ପରିଧି (ଏକାଙ୍କିକା) ଟ ୧୮

ସିନ୍ଦୂର (ନାଟକ) ଯନ୍ତ୍ରସ୍ଥ

